ଶୂଦ୍ରମୁନି ସାରଳା ଦାସଙ୍କ କୃତ

# ମହାଭାରତ

अश्वमेध ओ आश्रमिक पर्व

## ଅଶ୍ୱମେଧ ଓ ଆଶ୍ରମିକ ପର୍ବ







ନୂତନ ମୁଦ୍ରଣ

ମୂଲ୍ୟ





ପ୍ରକାଶକ-

ଶ୍ରୀ ରାଧାରମଣ ପୁସ୍ତକାଳୟ, ଝାଞ୍ଜଗଡ଼ି, କଟକ-୨

# ସୂଚିପତ୍ର

---

## ଅଶ୍ୱମେଧ ପର୍ବ



---

## ଆଶ୍ରମିକ ପର୍ବ



ଅଶ୍ୱମେଧ ଓ ଆଶ୍ରମିକପର୍ବ ସମାପ୍ତ

ସ ମ୍ପୂ ର୍ଣ୍ଣ



# ମହାଭାରତ

## ଅଶ୍ୱମେଧ ଓ ଆଶ୍ରମିକ ପର୍ବ



ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟମୁଦୀରୟେତ୍ ॥
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ଅନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ॥

ତଂ ବେଦଶାସ୍ତ୍ରପରିନିଷ୍ଠିତଶୁଦ୍ଧବୁଦ୍ଧିଂ,
ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୁତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଲାପଂ,
ବ୍ୟାସଂ ନମାମି ଶିରସା ତିଳକଂ ମୁନୀନାଂ ।

ଆଦୌ ତଦ୍ଧୃତରାଷ୍ଟ୍ରପାଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୂତେ ସ୍ତ୍ରୀହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।
ଲୀଳା ଗୋ ହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା ଜୃମ୍ଭଣଂ,
ଭୀଷ୍ମଦ୍ରୋଣସୁଯୋଧନାଦି ଦଳନଂ ଏତନ୍ମହାଭାରତଂ ॥

ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମାବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନାବର୍ତ୍ତିନୀ,
ସୋଽତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ ଯତ୍କର୍ଣ୍ଣଧାରେ ହରିଃ ॥

ଭାରତ ଶ୍ରୁତମାତ୍ରେଣ ଗଙ୍ଗାସ୍ନାନେନ ମାନବଃ ।
ବିଷ୍ଣୁ ସ୍ମରଣମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ॥
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଳ୍ମଷଂ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ।

ତତ୍ରୈବ ଗଙ୍ଗା ଯମୁନା ଚ ତତ୍ର ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବାଣି ତୀର୍ଥାନି ବସନ୍ତି ତତ୍ର ଯତ୍ରାଚ୍ୟୁତୋଦାର କଥାପ୍ରସଙ୍ଗଃ ।

## ବନ୍ଦନା

ଜୟ ଜୟ ବିଶ୍ୱନାଥ ପ୍ରସନ୍ନ ବଦନ
ଜୟ ଜୟ କୃତ୍ତିବାସ ଜୟ ତ୍ରିନୟନ ।
ବ୍ୟାଘ୍ରଚର୍ମ ମେଖଳା ଯେ ଶିରେ ଶୋଭେ ଜଟା
ଦିଗମ୍ବରନାଥ ମାରିଥାଅ ଯେ ଲେଙ୍ଗଟା ।
ଅମରପଦ ସେବକଲୋକଙ୍କୁ ଯେ ଦିଅ
ଭୋଗେ ମନ ନ ଦେଇ ଯେ ଭିକ୍ଷୁ ହୋଇଥାଅ
ପରମାନନ୍ଦ ନାଥ ତୁ ପର ଦୁଃଖେ ଦୁଃଖୀ
ସମସ୍ତଙ୍କୁ ସବୁ ଦେଇ କିଛି ନାହିଁ ରଖି ।
ସଂସାରପାଳକ ନାଥ ଚରଣେ ନମସ୍ତେ
ଦୁସ୍ତର ସାଗରୁ ନାଥ ଉଦ୍ଧର ଯେ ମୋତେ ।
ମମହୃଦେ ଜ୍ଞାନ ପାପ ଜାଳ ପଞ୍ଚାନନ
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ଅଟେ ତୁମ୍ଭର ନୟନ ।
ସୁଗନ୍ଧ ଚେଳ ବିଭୂତି ଭୂଷଣ ଯେ ତୁମ୍ଭ
ନୀଳବର୍ଣ୍ଣ କଣ୍ଠ ତବ ସ୍ଫଟିକ ଯେ ଦେହ ।
କେତେ ଏହି ସଂସାରେ ଯେ ହେଲାଣି ପ୍ରଳୟ
ରହିଅଛ ଦେବ ତୁମ୍ଭେ ଧରି ନିଜ ଦେହ ।
ତ୍ରିଲୋକ ରକ୍ଷଣେ ଭକ୍ଷିଥିଲ କାଳକୂଟ
ତେଣୁ ତବ ନାମ ହୋଇଅଛି ନୀଳକଣ୍ଠ ।
ସାଗର ତୀର୍ଥରେ ଦେବ ତବରୂପ ଦେଖି
ଜନମାନେ ସର୍ବପାପ ଆସନ୍ତି ଉପେକ୍ଷି ।
ଶ୍ରୀରାମେଶ୍ୱରଦେବଙ୍କ ପାଦେ ସଦା ସେବି
ନମଇ ଶ୍ରୀଶୂଦ୍ରମୁନି ଶାରଳା ଯେ କବି ।

---

## ଶ୍ରୀକୃଷ୍ଣଙ୍କର ଅଶ୍ୱମେଧ ଯାଗ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
କହିବାକୁ ଅଶ୍ୱମେଧ ଯାଗର ଯେ ସ୍ଥିତି ।
କହନ୍ତି ଶ୍ରୀକୃଷ୍ଣ ମୁଖ ଚାହିଁ ବଳଦେବ
ବହୁ ନରହତ୍ୟା ତୁମ୍ଭେ କଲୁରେ ମାଧବ ।
ସେହି ଦୋଷ ମାନଙ୍କରୁ ଉଦ୍ଧାର ନିମନ୍ତେ
ଅଶ୍ୱମେଧ ଯାଗ ବାବୁ କର ଶୁଦ୍ଧ ଚିତ୍ତେ ।
ଆଦର ବୋଇଲେ ଆନନ୍ଦରେ ଯାଗକର
ମୋ ଘରେ ରହିଲା ଯାଗଶାଳା ରକ୍ଷା ଭାର ।
ତେଜସ୍ୱୀ ଗୁଣ ଲକ୍ଷଣ ଅଶ୍ୱ ଏକ ଆଣି
ଶିରେ ମଣି ଖଞ୍ଜି କୋଟି କିରଣକୁ ଜିଣି ।
କୃଷ୍ଣ ବୋଇଲେ ଅକ୍ରୂର ଯିବୁ ଇନ୍ଦ୍ରପ୍ରସ୍ଥେ
ପଞ୍ଚପାଣ୍ଡବଙ୍କୁ ଘେନି ଆସିବୁ ତୁ ଏଥେ ।
ସୁଭଦ୍ରା ଦ୍ରୌପଦୀ ଘେନି ଆସ ବାବୁ ବେଗେ
ବୋଲିବ କୃଷ୍ଣ ବସିଲେ ଅଶ୍ୱମେଧ ଯଜ୍ଞେ
ଅକ୍ରୂର ଗମନ କଲା ଶ୍ରୀକୃଷ୍ଣ ବଚନେ
ପ୍ରବେଶ ହୋଇଲା ଇନ୍ଦ୍ରପ୍ରସ୍ଥର ଆସ୍ଥାନେ ।
ପ୍ରଣମି ଯୁଧିଷ୍ଠିର ଆଗେ କହିଲା ସକଳ
ଶୁଣିଣ ସାନନ୍ଦ ହେଲେ ପଣ୍ଡୁର ଦୁଲାଳ ।
ଅକ୍ରୂର କହନ୍ତେ ଅଶ୍ୱମେଧ ଯାଗ କଥା
ବନ୍ଦି ସାଜିଲେ ପାଣ୍ଡବ ପଞ୍ଚମହାରଥୀ ।
ଆସିଣ ହେଲେ ଦ୍ୱାରକା ଭୁବନେ ପ୍ରବେଶ
ଦେଖି ତାଙ୍କୁ ପୂଜା କଲେ ପ୍ରଭୁ ହୃଷୀକେଶ ।
ଦ୍ରୌପଦୀ ସତ୍ୟଭାମାଙ୍କ ବଢ଼ିଲା ପୀରତି
ଆନନ୍ଦେ ରହିଲେ ଯାଗ କରିବେ ଶ୍ରୀପତି ।
ବୋଇଲେ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ହେ ନରେନ୍ଦ୍ର
ତୁମ୍ଭେ ଆସିବାରୁ ହେଲା ମୁଁ ବଡ଼ ଆନନ୍ଦ ।
ପାଞ୍ଚଭାଇଯାକ ଏଥି ରହ ଯେ ନିଶ୍ଚିନ୍ତେ
ବଦନ୍ତି ଯୁଧିଷ୍ଠିରଦେବ କୃଷ୍ଣଙ୍କୁ ଏକାନ୍ତେ ।
ଅଶ୍ୱମେଧ ଯାଗ ଦେବ କରିବ ତ ତୁମ୍ଭେ
ସମସ୍ତ ସତର୍କ ସୁଖେ କରିବୁ ଯେ ଆମ୍ଭେ ।
ଯାଗଶାଳେକ ଶ୍ରୀକୃଷ୍ଣ ତିଆରିଲେ ତୁରିତେ
ଆସିଲେ କୃଷ୍ଣ ଆଜ୍ଞାରେ ମହର୍ଷି ସମସ୍ତେ ।
ଋଷିମାନଙ୍କୁ କହିଲେ ତହୁଁ ନାରାୟଣ
ତୁମ୍ଭେମାନେ ଯାଇ ଯାଗ କର ଆରୋପଣ ।
ବଶିଷ୍ଠ ଯେ ମାର୍କଣ୍ଡ ପୌଲସ୍ତି ଅଗସ୍ତି
ପରାଶର ଭରଦ୍ୱାଜ ଲୋମଶ ଯେ ଶକ୍ତି ।
ବିଭାଣ୍ଡକ ଋଷ୍ୟଶୃଙ୍ଗ ପଣ୍ଡୁଙ୍କ ସନ୍ତତି
ଜନକ ସନକ ଋଷି କଉସ୍ତୁଭ ଯତି ।
ବ୍ୟାସ ବାଲ୍ମୀକି ମୁନି ବିଶ୍ୱାମିତ୍ର ମେଳେ
ସମସ୍ତେ ପ୍ରବେଶ ହେଲେ ଆସି ଯାଗଶାଳେ ।
ଶ୍ରୀକୃଷ୍ଣ ବୋଇଲେ ତହୁଁ ଯୁଧିଷ୍ଠିରଦେବଙ୍କୁ
ଦାସୀ ହୋଇ ତୁମ୍ଭେ ଚର୍ଚ୍ଚା କର ସମସ୍ତଙ୍କୁ ।
ଯୁଧିଷ୍ଠିର ବୋଇଲେ ଦ୍ୱାରେ ଅରଜୁନ ଥାଉ
ତାହା ବିନା ସେ କାର୍ଯ୍ୟ କେ କରିପାରେ ଆଉ

କୃଷ୍ଣ ବୋଇଲେ ତା ସାଧି ନ ପାରେ ଅର୍ଜୁନ
କେବେଁ ଯଜ୍ଞ କରି ନ ପାରବୁ ସମାପନ ।
ଅର୍ଜୁନ ବୋଇଲେ ସ୍ୱାମି ସବୁ ତୁମ୍ଭେ ଜାଣ
କପାଇଁ ଏପରି କଥା କହ ନାରାୟଣ ।
ମହାଯୁଦ୍ଧେ ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ମୂଳେ
ଏଗାର ଅକ୍ଷଉଣୀ ବଳ ନାଶିଲି ମୁଁ ହେଳେ ।
ଏବେ ପରାକ୍ରମ ମୋର ଥିଲଟି ସେ ବେଳେ
ଯାଗ ଦ୍ୱାର ରକ୍ଷି ନ ପାରିବ ଏତେବେଳେ ।
ଏହା ଶୁଣି ଭଗବାନ ମନେ ବିଚାରିଲେ
କୋପ କରିବ ଏ ମନେ ଦ୍ୱାରେ ନ ରଖିଲେ ।
ବୋଇଲେ ଦ୍ୱାରକୁ ଯେବେ ପାର ରକ୍ଷାକରି
ଦ୍ୱାରପାଳ ସୁଖେ ଯାଇଁ ହୁଅ ଧନୁର୍ଦ୍ଧାରୀ ।
ତହୁଁ ଯାଇଁ ଦ୍ୱାରପାଳ ହେଲେ ଅରଜୁନ
ଧରି ଧନୁଶର ପାଶୁପତ ଅସ୍ତ୍ର ତୋଣ ।
ଲକ୍ଷେ ଷାଠିଏ ସହସ୍ର କୃଷ୍ଣଙ୍କର ପୁତ୍ର
ତଉଦ ଲକ୍ଷ ଯାଦବ ବଳ ଯେ ସମସ୍ତ ।
ଅନ୍ଧକ ବଂଶ ଯେ ବୃଷ୍ଣି ବଂଶ ଭୋଜ ବଂଶ
ଏ ମଧ୍ୟରେ ସାତବଂଶ ଯେବେ ହୃଷୀକେଶ ।
ଶତଶସହସ୍ର କନ୍ୟା ଅଷ୍ଟ ପାଟବଂଶୀ
ଦିବ୍ୟ ଅଳଙ୍କାର ପିନ୍ଧି ଯାଗଶାଳେ ପଶି ।
କୃଷ୍ଣ ବୋଇଲେ ପାର୍ଥ ତୁ ଥିବୁ ଯାଗଦ୍ୱାରେ
ବିନା ଆଜ୍ଞାରେ କେହି ନ ପଶିବେ ଭିତରେ
ତୁମ୍ଭେ ସମସ୍ତେହେଁ ଥିବ ଅସ୍ତ୍ର ଶସ୍ତ୍ର ଧରି
ବଳାତ୍କାରେ ଯେ ପଶିବ ପକାଇବ ମାରି ।
ପିନ୍ଧିଲେ ଯେ ଯାଜନକମାନେ ଝୀନବାସ
ଧଇର୍ଯ୍ୟ ଧରି ବସିଲେ ପ୍ରଭୁ ହୃଷୀକେଶ ।
ବସିଲେ ଯେ କପିଳାର ଘୃତେ ଦେବହର
କଟୀର ମେଖଳା କୃଷ୍ଣାଜିନ ଯେ ଉତ୍ତରୀ ।
ବ୍ରାହ୍ମଣଙ୍କୁ ଭୋଜନ ଯେ ଦିଅନ୍ତି ଅନେକ
ଅଗ୍ନି ଆରୋପଣ କଲେ ଯାଇଁ ଯାଜନକ ।
ମକର ଶୁକ୍ଳପକ୍ଷ ଚତୁର୍ଥୀ ଯେ ତିଥି
ଶ୍ରବଣା ନକ୍ଷତ୍ର ପୁଣି ବାର ବୃହସ୍ପତି ।
ଆୟୁଷ୍ମାନ ନାମେ ଯୋଗ ତୈତିଳ କରଣ
ଯେ ଦିନ ହୋଇଲା ଯଜ୍ଞ କର୍ମ ଆରୋପଣ ।

---

## ବ୍ରାହ୍ମଣର ମୃତପୁତ୍ର ଆନୟନ

ଏଥୁଅନନ୍ତରେ କଥା ଶୁଣ ହେ ନରେଶ
ଯଜ୍ଞର ତୃତୀୟ ଦିନ ହୋଇଲା ପ୍ରବେଶ ।
ସେ ନଗରେ ଥାଇ ବସୁକଳ୍ପ ଦ୍ୱିଜବର
ଶାସ୍ୱା ନାମେଣ ଭାରିଯା ଅଛଇ ତାହାର ।
ଷଡ଼ଗୋଟି ପୁତ୍ର ତାର ଜାତ ହୋଇଥିଲେ
ଅନୁଡ଼ଶାଳୁ ସେ ଅଦଭୁତେ କେଣେ ଗଲେ
ଅତ୍ୟନ୍ତ ବିକଳ ତହୁଁ ହେଲା ଦ୍ୱିଜବର
ପୁଣି ଅଶୁଚ ହୋଇଛି ଭାରିଯା ତାହାର ।
ଭାଳଇ ଦ୍ୱିଜ ବସି ଏ ଅଟେ ବସ୍ତୁପୁର
ବଇଷ୍ଣବୀ ଚକ୍ର ଏଥି ବୁଲେ ଶତଧାର ।
ଯମ ଦେବତା ପର୍ଷି ନ ପଶେ ଭୟ କରି
ଅନୁଡ଼ ଶାଳରୁ ପୁତ୍ର କଏ ନଏ ହରି ।
ବାର ବାର ହୋଇ ଷଡ଼ପୁତ୍ର ଜାତ ହେଲେ
ବଡ଼ ଅଦ୍ଭୁତ ଏ ଅନ୍ତର୍ଦ୍ଧାନେ କେଣେ ଗଲେ
କେବଣ ଚରିତ ଏହା କପରି ବୁଝିବ
ଭାଳଇ ବ୍ରାହ୍ମଣ କେଉଁ ଉପାୟ କରିବ ।
ଏ ମୋ ବିପଦ କରିବ କେହୁ ପ୍ରତିକାର
ଅନୁଡ଼ଶାଳରୁ ପୁତ୍ର କେ ନେଲା ମୋହର ।
ବ୍ରାହ୍ମଣ ବୋଇଲା ପୋଡ଼ୁ ପୋଡ଼ୁ ଏ ଦ୍ୱାରକା
ଏ ବସ୍ତୁ ଭବନେ ପାପ କଲି ମୁହିଁ ଏକା ।
ବ୍ରାହ୍ମଣୀ ବୋଲେ ପଣ୍ଡାଏ ନ ହୁଅ ବିକଳ
ଦୁଃଖନାଶ ହେବ ଶ୍ରୀକୃଷ୍ଣର ଯାଗଶାଳ ।
ଯଜ୍ଞ ଦ୍ୱାରେ ତୁମ୍ଭେ ଯାଇଁ ମାଗ ବଚନେକ
ଅବଶ୍ୟ ଦେବାକୁ ସେହି ହୋଇବେ ଉତ୍ସୁକ
ଯାଗର ତୃତୀୟ ଦିନ ଆଜ ଯେ ଅଟଇ
ବ୍ରାହ୍ମଣକୁ ପତ୍ନୀ ତାର କହିଲା ବୁଝାଇ ।
ଯେ ଯାହା ମାଗଇ ଅନୁକ୍ଷଣେ ଦିଅନ୍ତି ଦାନ
ତୁମ୍ଭେ ଏବେ ଯାଇ ପୁତ୍ର ଦାନ ମାଗି ଘେନ ।
ବ୍ରାହ୍ମଣ ଚଳିଲା ତହୁଁ ବେଦଧ୍ୱନି କରି
ଯାଗଶାଳ ଦ୍ୱାରେ ଯାଇ କରଇ ଗୁହାରି ।
କେତେ କେତେ ଦୁଷ୍ଟଙ୍କର ଗର୍ବ ମୁଁ ଭାଙ୍ଗିଲି
କେଉଁ କଥାକୁ ତୋର ମୁଁ କ୍ଷମ ଯେ ନୋହିଲି
ଦ୍ରୁପଦ ରାଜା ଯେବାଳେ କଲା ସ୍ୱୟମ୍ବର
ଲକ୍ଷେ ରାଜା ଆସିଥିଲେ ନିମନ୍ତ୍ରଣେ ତାର ।

ଲକ୍ଷ ବିନ୍ଧ ଦ୍ରୌପଦୀଙ୍କି ମୁହିଁ ଯେ ଆଣିଲି
କୁରୁବଳ ସୈନ୍ୟ ମୁହିଁ ଏକା ନିବାରିଲି ।
ବରଷ ରାଜ୍ୟେ ଯେ ନପୁଂସକ ମୁଁ ହୋଇଲି
ନାଟ ଆଖଡ଼ାରେ ନାଟ ଶିଖାଉଣ ଥିଲି ।
ଗୋଧନ ହରଣେ ଦୁର୍ଯ୍ୟୋଧନ ଯେ ଆଇଲା
ଶୁଣିଣ ଉତ୍ତର ମୋର ଚରଣେ ପଡ଼ିଲା ।
ତାହାର ଭୁଲେ ସାରଥି ହୋଇକରି ଗଲି
ରଥୀଙ୍କି ନଉନ ଦେଖି ସୈନ୍ୟ ନିବାରିଲି ।
କୁରୁ ପାଣ୍ଡବ ବଳ ଯେ ମହାଯୁଦ୍ଧ କଲେ
ଅନେକ ସୈନ୍ୟ ମୋହର ହସ୍ତେ ନାଶଗଲେ
ମାଇଲି ମୁଁ ଭୀଷ୍ମ ଦ୍ରୋଣ ଜୟଦ୍ରଥ ଭୂଲେ ।
ଏଗାର ଅକ୍ଷଉଣୀ ସଂହାରିଲି କୁରୁହଳେ ।
ଏହା ଶୁଣି ଦ୍ଵିଜବର ଉପହାସ କଲା
ତହୁଁ ବୀରବର ପାର୍ଥ ଅତ୍ୟନ୍ତ କୋପିଲା ।
ପୁଣି ବୋଇଲା ଅଟଇ ତୋର କିସ କାର୍ଯ୍ୟ
କହ ବ୍ରାହ୍ମଣ ମୋ ଆଗେ କରିଣ ନିର୍ଧାର୍ଯ୍ୟ
ଆହେ ଦ୍ଵିଜ ଯେ କୃଷ୍ଣ ସେ ଅଟଇ ଅର୍ଜୁନ
ଶବ ନିବାରଣେ ନଭିଦେହେ ବେନିଜନ ।
ଏହା ଶୁଣି ଦ୍ଵିଜ ପୁଣି କହେ ଅର୍ଜୁନକୁ
ଯାଅ ଫାଲ୍‌ଗୁନ ଶୀଘ୍ର ଜଣାଅ କୃଷ୍ଣଙ୍କୁ ।
ଷଡ଼ବେଳେ ଛପୁତ୍ର ମୋ ନାରୀ ଜନ୍ମ କଲା
ତତକ୍ଷଣେ ପୁତ୍ରକୁ ମୋର କିଏ ନେଇଗଲା ।
ଏବେ ବ୍ରାହ୍ମଣୀ ପ୍ରସବକାଳ ଯେ ପ୍ରବେଶ
ତେଣୁ ତା ରକ୍ଷଣେ ଆସେ ମୁହିଁ କୃଷ୍ଣପାଶ ।
ତୋହର ବେଦନା କହ କନା ମୋ ଆଗେ
ମୁଁ ତାହା ଭଲ କରିବ କୃଷ୍ଣ ଅନୁସଂଗେ ।
ବୋଇଲେ ବ୍ରାହ୍ମଣ କହିବାକୁ ଶକ୍ୟ ନାହିଁ
କିସ ତୁ କରିବୁ ତୋର ଆଗେ ଅବା କହି ।
ଏମନ୍ତ ଶୁଣି ଅର୍ଜୁନ ହସିଣ ବୋଲଇ
ସକଳ ପ୍ରାଣୀଙ୍କ କଷ୍ଟ ମୁଁ ସିନା ହରଇ ।
ତୁ ମୋର ଦର୍ପ ନ ଜାଣୁ ଆହେ ଦ୍ଵିଜବର
ମୁହିଁ ଯେ ସକଳ ଦୁଷ୍ଟଜନ ଦର୍ପହର ।
ହେ କୃଷ୍ଣ ତୋ ପୁରେ କପାଁ ଏ ଅନୀତ ହୁଏ
ଷଡ଼ପୁତ୍ର ଜନ୍ମିଲେ ମୋ ନେଲା ତାଙ୍କୁ କିଏ ।
ହେ କୃଷ୍ଣ ତୋ ଧର୍ମେ କପାଁ ଘଟଇ ଅରିଷ୍ଟ
ପୁତ୍ର ଦେଇ ମୋହର ଯେ ଦୂରକର କଷ୍ଟ ।

ଏହା ଶୁଣି ବୋଲଇ ଯେ ବୀର ଅରଜୁନ
ଏତେବେଳେ ତହଳ ତୁ ନ କର ବ୍ରାହ୍ମଣ ।
ମୋତେ ଏଥି ଯଜ୍ଞଶାଳ ଦ୍ଵାରେ ରଖିକରି
ଯଜ୍ଞସ୍ଥାନେ ବସିଛନ୍ତି ଦେବ ଦଇତ୍ୟାରି ।
କେଉଁ କାର୍ଯ୍ୟ ଅଛି ତୋର କହ ଦ୍ଵିଜବର
କିସ ଗୁହାରି ତୁ କରୁ ହୋଇଣ କାତର ।
ଦଶମାସ ସମ୍ପୂର୍ଣ୍ଣ ଯେ ହୋଇଲାକ ଆସି
ଅନ୍ତୁଡ଼ଶାଳେ କେ ହରିନେବ ବଳେ ପଶି ।
ଅର୍ଜୁନ ବୋଲେ ବ୍ରାହ୍ମଣ ଶୁଣ ମୋ ଉତ୍ତର
ତୋର ଆଗେ କି କହିବ ଦର୍ପ ଯେ ମୋହର
ଅନ୍ତକ ନିବାରିବାକୁ ମୋର ବଳ ଅଛି
ତୋହର କଥା ତ ମୋତେ ଆଶ୍ଚର୍ଯ୍ୟ ଲାଗୁଛି
ଏ ବାନ୍ତି ପ୍ରସବ କାଳେ ରଖିବ ତୋ ବଳା
ବୋବାଳି ନ ପକାଅ ତୁ ଏଥୁ ବେଗେ ପଳା
ଏ ତୋହର ପୁତ୍ର ଯେବେ ନ ପାରିବି ରଖି
ଅଗ୍ନି ଜାଳି ମରିବି ଏ ସତ୍ୟ ଧର୍ମ ସାକ୍ଷି ।
ଏ ଛାର କଥାକୁ ତୋର ଏତେକ ତହଳ
ଚଳ ହେ ବ୍ରାହ୍ମଣ ଏବେ ଯିବା ତୋର ଘର
ଆଗରେ ବ୍ରାହ୍ମଣ ପଛେ ଅରଜୁନ ଗଲେ
ଯାଇଁ ବ୍ରାହ୍ମଣ ମନ୍ଦିରେ ପ୍ରବେଶ ହୋଇଲେ ।
ଭିତରକୁ ଆସ ଆସ ବୋଲଇ ବ୍ରାହ୍ମଣ
ପାର୍ଥ ଭାଳେ କେଉଁ ଯିବ ପ୍ରସବର ସ୍ଥାନ ।
ବୋଇଲେ ବ୍ରାହ୍ମଣ ତୁହେ କହୁଥିଲୁ ମିଥ୍ୟା
ସନ୍ନିଧେ ଦେଖୁ ନାହିଁ ହରଣ ବ୍ୟବସ୍ଥା ।
ବ୍ୟାକୁଳ ଜାଣି ଅର୍ଜୁନ ପଶିଲା ଭିତରେ
ଧନୁଶର ଧରି ପାର୍ଥ ବସିଲାକ ଦ୍ଵାରେ ।
ପ୍ରବେକ ବ୍ରାହ୍ମଣୀ ଗର୍ଭ ପ୍ରସବ ହୋଇଲା
ନାଭି କାଟି ଅର୍ଜୁନକୁ ପୁତ୍ର ଦେଖାଇଲା ।
ଗାଧୂଆଇ ଅନ୍ତୁଡ଼ିରେ ଶୁଆଇଲା ବାଳୀ
ଜନ୍ମୋତ୍ସବେ ଘନଘନ ପଡ଼େ ହୁଳହୁଳି ।
ଭିତରେ ଶୁଭିଲା ଯହୁଁ ହୁଳହୁଳି ଶବ୍ଦ
ସେ ହୁଳହୁଳି ମଝେ କି ପଡ଼ିଲା ପ୍ରମାଦ ।
ବାଳକ ଦେଖି ଅର୍ଜୁନ ଆନନ୍ଦ ହୋଇଲେ
ମନଭେଦୀ ନାରାଚକୁ ବେଗେ ସେ ପେଷିଲେ
ଗୃହର ଚଉକତିକି ବେଢ଼ିଲା ସେ ଶର
ମାଛି ନ ଗଳିବ ଶରବାଡ଼ର ଭିତର ।

ଏଣେ ତ ଦ୍ୱାର ବନ୍ଧନେ ଅର୍ଜୁନ ଜଗିଲା
ତାହା ଦେଖି ବ୍ରାହ୍ମଣ ଯେ ଆନନ୍ଦ ହୋଇଲା
କ୍ଷଣ ଆଡେ ସୂତ୍ରଜନେ ଏଥିର ଚଳିଲ
ଜାଇବର ଜଡମ୍ବନା ହୋଇଲା କେମନ୍ତ ।
ଅଦଭୁତେ ନନ୍ଦନ ତ କେଉଁଆଡେ ଗଲା
ହା ପୁତ୍ର ବୋଲି ବ୍ରାହ୍ମଣୀ ଉଚେ ଶୋକ କଲା
କାନ୍ଦଇ ବ୍ରାହ୍ମଣ ଅର୍ଜୁନର ମୁଖ ଚାହିଁ
ବିଶ୍ୱାସଘାତକା କୁ ରେ ହୋଇଲୁ କପାଇଁ ।
ଶସ୍ତ୍ର ଧରି କହନ୍ତି ଯେ ବ୍ରାହ୍ମଣ ବ୍ରାହ୍ମଣୀ
ତୋହଯୋଗୁ ହତ ଆମ୍ଭେ ହେବୁ ହୋଇ ହାଣି
ଧିକ ଧିକ ଅର୍ଜୁନ ହୋ ତୋର କ୍ଷତ୍ରି ଧର୍ମ
କ୍ଷତ୍ରିକୁଳେ କପାଇଁ ହୋଇଲୁ ତୁ ଜନ୍ମ ।
ଧିକ ହେଉନା ଅକ୍ଷୟ ତୋଣ ବେନି ତୋର
ଧିକ ତୋ ଗାଣ୍ଡୀବ ଧନୁ ଜନମି ପିଣ୍ଡର ।
ଏତେ କଡ଼ ପ୍ରତିଜ୍ଞା ତୁ କରିଣ ଅଇଲୁ
ମୋହର ପୁତ୍ରକୁ ଯାହା ରଖି ନ ପାରିଲୁ ।
ଅଇଲୁ ତୁ ଏଡେ ଟାଣକରି ପୁତ୍ରରଖି
ଏବେ ମୋର ହତ୍ୟାକାଣ୍ଡ ଯାଅନେଇଦେଖି
ଶୁଣି ଅର୍ଜୁନ କପାଳେ ମାରି ବେନି ହସ୍ତ
ବୋଇଲେ ଏ କର୍ମ କଷ୍ଟେ ଦଇବର କୃତ୍ୟ ।
କାଷ୍ଠ ଅଣାଇ ଅନଳ ଜାଳିଲା ଅର୍ଜୁନ
ପ୍ରଦକ୍ଷିଣ କରି ଆଣିବାକୁ କରେ ମନ ।
ଏ ବାରତା ଶ୍ରୀକୃଷ୍ଣଙ୍କୁ ଉଗରି କହିଲା
ଧର୍ମବେଳେ ଆହେ ଦେବ ପ୍ରମାଦ ପଡ଼ିଲା ।
ବ୍ରାହ୍ମଣର ପୁତ୍ର ରଖି ନ ପାରିଲା ଯେଣୁ
ହୁତାଶନେ ଭସ୍ମହେବ ଅରଜୁନ ତେଣୁ ।
କି କରିବ ବୋଲି ଭାଳୁଛନ୍ତି ବାସୁଦେବ
କେଉଁପରି ଅନଳରେ ପାର୍ଥ ନାଶିବ ।
ଏଡ଼େ ବଡ ଯଜ୍ଞ ମୋତେ ପ୍ରାପତ ହୋଇଲା
ପୁତ୍ର ଅଭିଶାପ ଆଣି ଏହା ଘଟାଇଲା ।
ଉଠିଲେ ଆସନ ତେଜି ତହୁଁ ଶ୍ରୀବତ୍ସାଙ୍କ
ବ୍ରାହ୍ମଣ ମଢରେ ପ୍ରବେଶିଲେ ବେଗେ ଯାଇ
ଅନନ୍ତେ ଯଶୁଁ ପାର୍ଥଙ୍କୁ ଧଇଲେ ଯେ କୋଳେ
କଷ୍ଟ ତ କାରଣ ବୋଲି ମଧୁରେ ପୁଚ୍ଛିଲେ ।
ପାର୍ଥ ବୋଲେ କେ ବ୍ରାହ୍ମଣ ପୁତ୍ର ନଏ ହରି
ତେଣୁ ସେ ବ୍ରାହ୍ମଣ ହାରେ କଲାକ ଗୁହାରି ।

ମୁହିଁ ବୋଇଲି ଶୋକ ନ କର ଧର୍ମବେଳେ
ତୋ ପୁତ୍ରକୁ ରଖିବି ମୁଁ ଜନ୍ମଦେବାକାଳେ ।
ମୋହର ଦେଖନ୍ତେ ନେଲା ଗୃପତେ କେ ହରି
ଆଉରି କି ପ୍ରୟୋଜନ ଜୀବନେ ମୋହର ।
ବାକ୍ୟ ଚଳନ୍ତି ହୋନ୍ତି ଯେବଣ ପୁରୁଷ
କେ ଦେବ ତାଙ୍କ ଜୀବନେ ପ୍ରୟୋଜନ କସ ।
ତାହା ଶୁଣିଣ ଶ୍ରୀକୃଷ୍ଣ ବୋଇଲେକ ହସି
ଆସ ହୋ ଅର୍ଜୁନ ତାର ପୁତ୍ରକୁ ଉଦ୍ଦେଶି ।
ଏମନ୍ତ ବଚନ କୃଷ୍ଣ ମୁଖୁ ପାର୍ଥ ଶୁଣି
କହନ୍ତି କେସନେ ପୁତ୍ର ଦେବ ଚକ୍ରପାଣି ।
ଶ୍ରୀକୃଷ୍ଣ ବୋଇଲେ ଆସ ଆସ ହୋ ଅର୍ଜୁନ
ବ୍ରାହ୍ମଣର ପୁତ୍ରକୁ ମୁଁ ଦେବଇଁ ବହନ ।
ଶ୍ରୀକୃଷ୍ଣ ବାକ୍ୟେ ବିଷାଦ ଲଭି ଅରଜୁନ
ପୁଣି ବୋଇଲେ କପରି ଦେବ ଜନାର୍ଦ୍ଦନ ।
ତହୁଁ ପବନ ଆଗେଣ୍ଟ ଦେବଙ୍କର ପୁତ୍ର
ସହିତରେ ବିଜେକଲେ ସାରଥିର ପାର୍ଥ ।
ବଳଦେବଙ୍କୁ ବୋଇଲେ ଦେବ ଦେବ ହରି
ମୋ ଆସିବାଯାଏ ଥିବ ଦ୍ୱାର ରକ୍ଷାକରି ।
ଋଷିମାନେ ରକ୍ଷା କରିଥାନ୍ତୁ ମୋର ଯାଗ
ଅର୍ଜୁନ ପ୍ରତିଜ୍ଞା ରଖି ଆସଇ ମା ବେଗ ।
ରଥ ଚଢି ବିଜେକଲେ ପାର୍ଥ ପୀତବାସ
ପାତାଳ ବିବରେ ଯାଇ ହୋଇଲେ ପ୍ରବେଶ
ତେଣିକି ଯେ ଆଉ ରଥ ନ ପାରିଲା ଯାଇ
ତହିଁ ରଥ ରଖି ତହୁଁ ପଶିଲେ ଯେ ଦୁଇ ।
ମହାଘୋର ଅନ୍ଧାର ଯେ ନ ଦିଶଇ ବାଟ
ବେନିଜନେ ପଶିଲେ ସେ ଦୁଃସହ ସଙ୍କଟ ।
ଅର୍ଜୁନର ହସ୍ତ ଧରି କେତେଦୂର ଗଲେ
ଅନ୍ଧାର ତେଜି ସୁବର୍ଣ୍ଣ ପୁରେକ ଦେଖିଲେ ।
ଅର୍ଜୁନ ବୋଇଲେ ତହିଁ କୃଷ୍ଣ ମୁଖ ଚାହିଁ
ଅଦ୍ଭୁତ ଭୁବନେ ଦେବ ପଶିଲୁ କପାଇଁ ।
ବୋଲନ୍ତି ମାଧବ ଆହେ ଅର୍ଜୁନ ତୁ ଶୁଣ
ଏ ପୁରକୁ ସରି ନୋହେ ବାରସ୍ୱର୍ଗ ପୁଣ ।
ବହୁ ପୁଣ୍ୟକଲେ ଏହି ପୁର ଦେଖିପାରି
ସାମାନ୍ୟ ଲୋକ ଏଥିକି ପଶି ଯେ ନ ପାରି
କୃଷ୍ଣ ବଚନେ ବୋଲନ୍ତି ବୀର ଧନଞ୍ଜୟ
ଆକାଶେ ବସନ୍ତି ସିନା ଦେବତା ନିଚୟ ।

ବୋଲନ୍ତି କେଶବ ଆହେ ଶୁଣ ଫାଲଗୁନ
ଦେବତାଙ୍କ ସ୍ଥାନ ତିନ ଭୁବନରେ ସୃଷ୍ଟି ।
ଏହିରୂପେ ସଦାଶିବ ବସନ୍ତି ନିତ୍ୟରେ
ସେ ବିଷ୍ଣୁ ସେ ହର ନାହିଁ ସନ୍ଦେହ ଏଥିରେ
ଏହି ପାତାଳେ ହାଟକେଶ୍ୱର କଇଳାସ
ମର୍ତ୍ତ୍ୟର କୈଳାସ ମଧ୍ୟେ ସ୍ୱର୍ଗେ ଯାଇ ବାସ ।
ରଜତ କୈଳାସ ନାମେ ଭୁବନ ଆକାଶେ
ତ୍ରିଅମ୍ବକନାଥ ତହିଁ ବସେ ଚତୁର୍ମାସେ ।
ବିଷ୍ଣୁନାଥଙ୍କର ଏହି ବଇକୁଣ୍ଠପୁର
ମର୍ତ୍ତ୍ୟପୁରେ ଦ୍ୱାରକାରେ ହୁନ୍ତି ଅବତାର ।
ସ୍ୱର୍ଗପୁରେ ବାରସ୍ୱର୍ଗ ଭୁବନ ନିର୍ମାଣ
ଏ ବିଧି ତିନଭୁବନ ଅଟଇ ପ୍ରମାଣ ।
ଚଉଦଲକ୍ଷ ଯେ ବିଷ୍ଣୁଗଣ ଥାନ୍ତି ଏଥେ
ବିଷ୍ଣୁନାଥଙ୍କୁ ଦର୍ଶନ କରୁଥାନ୍ତି ନିତ୍ୟେ ।
ବିଷ୍ଣୁଜନା ଲୋକଙ୍କର ଅଟେ ଏ ଆବାସ
ଆମ୍ଭଙ୍କୁ ଦେଖିକରି ସେ ହୋଇଲେ ଉଲ୍ଲାସ ।
ମହାପୁଣ୍ୟବନ୍ତ ତୁମ୍ଭେ ଅଟ ହେ ଅର୍ଜ୍ଜୁନ
ସେ ବିଷ୍ଣୁଙ୍କୁ ଆଜ ତୁମ୍ଭେ କରିବ ଦର୍ଶନ ।
ଶ୍ୱେତ ରଜତ ରତ୍ନପୁରୀ ସେ ସ୍ୱର୍ଣ୍ଣ ନିର୍ମିତ
ହୀରା ନୀଳା ମଣି ମାଣିକ୍ୟରେ ଯେ ମଣ୍ଡିତ ।
ପ୍ରବାଳେ ବଚିତ୍ର ରୁଅ କମନୀୟ କାନ୍ତ
ସୁବର୍ଣ୍ଣ ଘୁଙ୍ଗୁଣୀ ସେହି ସୁସଜ୍ଜ ଯେ ଅତି ।
ଦେଖି ତାହା ଅର୍ଜ୍ଜୁନର ଉଲସଇ ଗାତ୍ର
ବଚିତ୍ର ଭୁବନ ମୋହ କରଇ ସେ ଚିତ୍ତ ।
କୃଷ୍ଣ ବୋଲନ୍ତି ଜଣାଅ ହେ ଜୟ ବିଜୟ
କହିବ ଆସିଅଛନ୍ତି କୃଷ୍ଣ ଧନଞ୍ଜୟ ।
ବିଜୟ ଯେ ଜଣାଇଲା ବିଷ୍ଣୁଙ୍କର ଆଗ
ଏହା ଶୁଣିଣ ସାନନ୍ଦ ହେଲେ ଶିରିରଙ୍ଗ ।
ଆଜ୍ଞାପାଇ ଦେନିଜଣେ ଭିତରେ ପଶିଲେ
ମନୋହର ରତ୍ନସିଂହାସନ ଯେ ଦେଖିଲେ ।
ସୁବର୍ଣ୍ଣର ପୁର ଅଷ୍ଟରତନ ଜଡ଼ିତ
ହୀରା ନୀଳା ମାଣିକ୍ୟ ଯେ ବୈଦୁର୍ଯ୍ୟ ଖଞ୍ଜିତ
ଯୋଗଧ୍ୟାନେ ବସିଛନ୍ତି ସେ ପୁରୁଷୋତ୍ତମ
ଦେଖି ତାଙ୍କୁ ହରଷିତ ହେଲେ ଦେନିଜଣ
ଚତୁର୍ଭୁଜ ନୀଳୋତ୍ପଳ ବର୍ଣ୍ଣ ଭଗବାନ
ପୀତବସ୍ତ୍ର-ଧାରୀ ପଦ୍ମ-ପଲାଶ ଲୋଚନ ।

ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜେ ଶୋଭେ
ସ୍ୱର୍ଣ୍ଣ ପଦ୍ମମାଳା ଲମ୍ବିଅଛି ଯେ ହୃଦୟେ ।
ଦେଖି ତାଙ୍କୁ ଭକ୍ତିଭରେ ପ୍ରଣମିଲେ ଦେନି
ଉଠି ଉଭାହୋଇ ସ୍ତୁତି କରନ୍ତି ବଇଣୀ ।
ଯୋଗଧ୍ୟାନ ଭେଦି ତହୁଁ ଦେବ ନାରାୟଣ
ଦେଖି ଶ୍ରୀକୃଷ୍ଣଙ୍କୁ ଧୀରେ ବୋଲନ୍ତି ବଚନ ।
ହେ ପୁରୁଷୋତ୍ତମ ବଳରାମ ଅର୍ଜ୍ଜୁନଙ୍କୁ
ଘେନି କିପାଁ ଆସୁନାହଁ ବୈକୁଣ୍ଠପୁରକୁ ।
ଏଠାବରୁ ଯାଇ ପାସୋରିଲ ଏ ଭୁବନ
ଏତେଦିନଯାଏ ରହିଅଛ କି କାରଣ ।
ନର ନାରାୟଣ ମୂର୍ତ୍ତି ଅଟ ତୁମ୍ଭେ ଦେନି
ଭାର ନିବାରଣେ ଜାତ ହୋଇଲ ମେଦିନୀ ।
ମହୀ ଯହୁଁ ସହି ନ ପାରିଲା ମହାଭାର
ମୋ ପାଶକୁ ଆଇଲେ ଯେ ତ୍ରିଦଶ ଅମର ।
କ୍ଷୀର ସମୁଦ୍ରରେ ରହିଥିଲି ଯୋଗଧ୍ୟାନେ
ସର୍ବେ ମିଳିକେ ଯେ ଆସି ମୋର ସନ୍ନିଧାନେ
କହିତ ବିନୟ କରି କହିଲେ ଯେ ମୋତେ
ମହୀଭରୁ ତାହା ତୋଳି ରଖିବା ନିମନ୍ତେ ।
ତହୁଁ ଆମ୍ଭେ ଜନ ଦେନ୍ତୁ ଧଳା କଳା ଲୋମ
ଦୁଇଗୋଟି ଦେଲୁ ତହୁଁ ହୋଇ ପୂର୍ଣ୍ଣକାମ ।
ମଥୁରା ନଗରେ ଦେବକୀ ଯେ ବସୁଦେବ
ତାଙ୍କ ପୁତ୍ର ହୋଇ ତୁମ୍ଭେ ହୋଇଲ ଉଦ୍ଭବ ।
ସେ ଶୁକ୍ଳ ଲୋମ ଅଟଇ ଯେ ବଳରାମ
କଳାଲୋମୁଁ ଜନ୍ମିବାରୁ କୃଷ୍ଣ ତୋର ନାମ ।
ଯେ କାରଣେ ପଠାଇଲୁ ତା ସାଧନ କରି
ନିଶ୍ଚିନ୍ତେ କିପାଇଁ ରହିଅଛ ମଧୁପୁରୀ ।
ମର୍ତ୍ତ୍ୟ ସୁଖ-ଭୋଗ ପାଇ ତାହା ପାସୋରିଲ
ଏବେ ଯାଇଁ ବେଗେ ଆସ ନୋହି ତହିଁ ଭୋଳ
ମୁହିଁ ମହାବିଷ୍ଣୁ ଅଟେ ଶୁଣ ମୋର ଯୋଗ
ମର୍ତ୍ତ୍ୟ ରହି କେତେ କରୁଥିବ ସୁଖ ଭୋଗ ।
ଶୁଣି ଶ୍ରୀକୃଷ୍ଣ ବୋଲନ୍ତି କୃତାଞ୍ଜଳି ହୋଇ
ଭୋଳେ ସେ ସକଳ କଥା ଆମ୍ଭ ମନେ ନାହିଁ
ଏବେ ତୁମ୍ଭ ଆଜ୍ଞାରେ ଯେ ଆସିବୁ ସତ୍ୱର
ପୂର୍ବ କଥା ସବୁ ମନେ ପଡ଼ୁଛି ଆମ୍ଭର ।
ମହାଭାରତ ଉଶ୍ୱାସ ଯେ ହେଲାଣି ମେଦିନୀ,
ଶୀଘ୍ରେ ମୁଁ ଆସିବି ସଙ୍ଗେ ବଳରାମେ ଘେନି ।

ଯାଉଥିବେ ଯେତେ ଅନନ୍ତ ମୋର ଯାତବଂଶ
ଆସିବାବେଳେ ତାହାଙ୍କୁ କରିବ ସେ ନାଶ ।
ଯାଅ ବୋଲି ବସ୍ତ୍ରୁ ତହିଁ ତାଙ୍କୁ ଆଜ୍ଞା ଦେଲ,
ପ୍ରଣମି ମହାବସ୍ତ୍ରୁଙ୍କୁ ଶ୍ରୀକୃଷ୍ଣ ବୋଇଲେ ।
ଯେବଣ କାରଣେ ଆମ୍ଭେ ଅଇଲୁ ଗୋସାଇଁ
ସେ କାର୍ଯ୍ୟ ସାଧି ଆମ୍ଭଙ୍କୁ ବେଗେକର ବାହି ।
ମୋହର ନଗରେ ଥିବ ଏକ ଦ୍ୱିଜବର
ସପତପୁତ୍ର ଜନମ ହୋଇଲା ତାହାର ।
ଅନୁଭଣାକେ ତାହାଙ୍କୁ ଖ୍ୱାଇଦେଲେ ସର୍ବ
ଶୂନ୍ୟେ ହରଣ କରଣ ନେଇଗଲା କେହ୍ନ ।
ଯାଗଶାଳ ଭିତରେ ଯେ ମୁହିଁ ଥିଲି ବସି
ଗୁହାରି କଲା ବ୍ରାହ୍ମଣ ହାରଦେଶେ ଆସି ।
ପାର୍ଥଙ୍କୁ ରଖାଇଥିଲି ଯାଗଶାଳ ହାରେ
ସେ ଦ୍ୱିଜ ଗୁହାରି କଲେ ଅତ୍ୟନ୍ତ କାତରେ ।
ଯାଗ ସମୟରେ ମୋତେ ଯେ ମାଗିବ ଯାହା
ପ୍ରତିଜ୍ଞା ମୁଁ କରିଥିଲି ଦେବି ତାକୁ ତାହା ।
ସେ ବ୍ରାହ୍ମଣ ପାର୍ଥେ ମାଗି ସତ୍ୟ କରାଇଲେ
ଦେବାକୁ ଏ କନ୍ଥ ବସ୍ତ୍ର ପ୍ରତିଜ୍ଞା ଯେ କଲେ ।
ପୁଣି ବୋଇଲେ ଯେବେ ମୁଁ ରଖି ନ ପାରିବ
ତୁମ୍ଭ ଆଗେ ଅଗ୍ନି ଜାଳି ନିଶ୍ଚୟ ମରିବ ।
ଅନୁଭଣାକୁ ତା ପୁତ୍ରଙ୍କୁ କେ ଘେନଗଲା
ତେଣୁ ଅର୍ଜୁନ ଅଗ୍ନିରେ ମରିବ ବୋଇଲା ।
ନ ଦେଖି ପୁତ୍ରଙ୍କୁ ଦ୍ୱିଜ ବହୁ ଶୋକ କଲା
ତେଣୁ ତାର ଆଗେ ପାର୍ଥ ଅଗ୍ନି ଲଗାଇଲା ।
ଦ୍ୱାରପାଳ ଏହି କଥା କହିଲେକ ଯାଇ
ଅଗ୍ନିରେ ଅର୍ଜୁନ ପଶୁଅଛି ହେ ଗୋସାଇଁ ।
ତାହା ଶୁଣି ମୁହିଁ ବଡ଼ ସନ୍ତାପିତ ହେଲି
ବ୍ରାହ୍ମଣ ପୁରକୁ ଆସି କାରଣ ପୁଚ୍ଛିଲି ।
ସକଳ ବୃତ୍ତାନ୍ତ କହିଲେ ସେ ଦ୍ୱିଜବର
ରଥ ଆରୋହି ଅଇଲି ତହୁଁ ଏହିପୁର ।
ଆସୁ ଆସୁ ଦେବ ତବ ଏ ପୁରେ ପାଇଲି
ତୁମ୍ଭଙ୍କୁ ଦର୍ଶନ କରି ଆନନ୍ଦିତ ହେଲି ।
ଏଥିର ବୃତ୍ତାନ୍ତ ମୋତେ କହନ୍ତୁ ବହନ
ଯେଉଁପରି ହୁତାଶନେ ନ ପଶେ ଅର୍ଜୁନ ।
ହସିଣ ପରମ ବସ୍ତ୍ରୁ କହିଲେ କୃଷ୍ଣଙ୍କୁ
ମୁହିଁ ଆଣିଅଛି ସେହି ବ୍ରାହ୍ମଣ ପୁତ୍ରଙ୍କୁ ।

ତୁମ୍ଭେ ଆସିଲେ ସାକ୍ଷାତ ହେବ ବୋଲିକରି
ଦ୍ୱିଜସୁତଙ୍କୁ ଅଣିଲି ମୁଁ ଉପାୟ କରି ।
ଦେଇ ତାଙ୍କୁ ଶ୍ରୀକୃଷ୍ଣଙ୍କୁ ପ୍ରକାଶିଲେ ଋଷ
ହାପର ସରିଲା କଳି ହୋଇବ ପ୍ରବେଶ ।
ମର୍ତ୍ତ୍ୟରେ ନ ରହ ବେଗେ କର ଅଭିଳାଷ
ରାମଙ୍କୁ ଘେନି ବହନ ତୁମ୍ଭେ ସ୍ୱର୍ଗେ ଆସ ।
ତୋର ବଂଶ ପୃଥିବୀକୁ ହୋଇଅଛି ଭାର
ସେମାନେ ଥିଲେ ବିଶ୍ୱାସ ନୁହେଁ ବସୁନ୍ଧରା
ତାହାଙ୍କୁ ବିନାଶି ଶୀଘ୍ର ଆସ ବୈକୁଣ୍ଠକୁ
ବାଟ ଚାହିଁବସିଛନ୍ତି ନିତେଣେ ତୁମ୍ଭଙ୍କୁ ।
ସେହି ବ୍ରାହ୍ମଣର ସପ୍ତପୁତ୍ରଙ୍କୁ ହେ ନିଅ
ସୁଖୀହେବ ସେ ବ୍ରାହ୍ମଣ ଶୀଘ୍ର ହୋଇ ଯାଅ ।
ମର୍ତ୍ତ୍ୟରେ ଯେତେକ ଭାର ଆଉ ଅଛି ରହି
ସକଳ ବିନାଶି ତୁମ୍ଭେ ଆସ ବେଗ ହୋଇ ।
ସୁଖଭୋଗ ଯାଇ ପୁଣି ଆଉ ନ ରହିବ
ଯାଅ ଶୀଘ୍ରହୋଇ ସ୍ୱର୍ଗେ ଆସ ବାସୁଦେବ ।
ସାତ କୁମରଙ୍କୁ ମହାବସ୍ତ୍ରୁ ଦେଲେ ଆଣି
ପୁଣି ବସ୍ତ୍ରୁଙ୍କୁ ନମିଲେ କୃଷ୍ଣ ଫାଲଗୁନ ।
ଜୟ ଜୟ ନୀଳଗିରିବାସୀ ପୀତବାସ
ଜନ୍ମେ ଜନ୍ମେ ମୁହିଁ ତୋର ଦାସର ଯେ ଦାସ
ଅମୃତ ଭାଷା ଏହି ଯେ ଶ୍ରୀବସ୍ତ୍ରୁର ଲୀଳା
ଯାବତଚନ୍ଦ୍ରାର୍କେ ସମ୍ଭୁତ ହୁଏ ତୋର କଳା ।
ଭଜକାଳ ଜନଙ୍କର ଅଟେ ଅଳ୍ପବୁଦ୍ଧି
କେହୁ ଅନ୍ତ ପାଇବ ଏ ଅଗାଧଜଳଧି ।
ଅଗାଧ ସାଗର ମହାଭାରତର ଗାଥା
ବୋଲନ୍ତେ ଭବ ଭବ ନ ସରେ ଯେଉଁକଥା
କୃପାଜଳନମ୍ବୀ ଯାହା ନାମ ଭଦ୍ରକାଳୀ
ସେ ମୋହର ବକ୍ଷସ୍ଥଳେ ମାଳୋପୃଜ ମାଳା
ତାର ପ୍ରସାଦେ କହିବ ବରଇ ଯେ ଗୀତ
ପଢ଼ନ୍ତେ ଶୁଣନ୍ତେ ଯାହା ଲଭନ୍ତି ସଦ୍‌ଗତି ।
ଝଙ୍କଡ଼-ପୁରବାସିନୀ ଶାରଳାଙ୍କୁ ଚରେ
ଶ୍ରୀଶୂଦ୍ରମୁନି ଶାରଳା ଦାସ ଭବେ ନତ୍ୟେ ।

## ଭଦ୍ରାବତୀର ଯୁଦ୍ଧଯାତ୍ରା

ଜୟ ଜୟ ପରାଶର ସୁତ ମୁନିବ୍ୟାସ
ଯାହାର ଯୋଗୁଁ ଶ୍ରୀମହାଭାରତ ପ୍ରକାଶ ।

ବ୍ରହ୍ମାର ଯେ ଆତ୍ମା ତୁମ୍ଭେ ଅଟ ମୁନିବର
କୋଟି କୋଟି କଲ୍ପ ତୁମ୍ଭେ ଅଟ ଯେ ଅମର
ପୃଥ୍ୱୀ ଆପ ତେଜ ବାୟୁ ଆଉର ଆକାଶ
ସଞ୍ଚ ପଞ୍ଚଭୂତ କର ଲପ୍ତେ ଏକବାସ ।
ନରଙ୍କୁ ଉଦ୍ଧାର କରେ ତୁମ୍ଭର ଭାରତ
ମହାବ୍ରହ୍ମ ଭେଦ ବୁଦ୍ଧି ହୋଇଲୁ ଉତ୍ପତ୍ତି ।
ଏ ମୁନିର ପ୍ରସାଦେ ମୁଁ କହିବି ଭାରତ
ଅଶ୍ୱମେଧ ଯାଗ ଏ ଯେ କୃଷ୍ଣର ଚରିତ ।
ଶ୍ରୀକୃଷ୍ଣ ଅର୍ଜୁନ ଗଲେ ପାତାଳ ପୁରକୁ
ବ୍ରାହ୍ମଣର ସାତପୁତ୍ର ଘେନି ଆସିବାକୁ ।
ଅଶ୍ୱମେଧ ଯାଗଦ୍ୱାରେ ରକ୍ଷାକାରୀ ତାହିଁ
ବଳଦେବ ଶମ୍ବାଜିତ ଉଦ୍ଧବଙ୍କୁ ରଖି ।
ବୋଇଲେ ପାତାଳେ ଗଲେ ଶ୍ରୀକୃଷ୍ଣ ଅର୍ଜୁନ
ଯାଗଶାଳ ଦ୍ୱାର ବାକୁ ହୋଇଲାକ ଶୂନ୍ୟ ।
ତୁମ୍ଭେ ଦୁହେଁ ଯାଇ ବାବୁ ଦ୍ୱାର ରକ୍ଷା କର
କେହି ନ ପଶିବେ ଯାଗଶାଳାର ଭିତର ।
ଆଜ୍ଞା ଦେଲେ ଯହୁଁ ଶମ୍ବାଜିତ ଉଦ୍ଧବଙ୍କୁ
ଦ୍ୱାର ରକ୍ଷା କରି ନରୋଧିଲେ ସେ ସବୁଙ୍କୁ ।
ମାର୍କଣ୍ଡ ବଶିଷ୍ଠ ସେ ବଅନ୍ତି ଆହୁତ
ବେଦଧ୍ୱନି ଶବ୍ଦରେ କମ୍ପେ ବସୁମତୀ ।
ନାରଦ ଭାବନ୍ତି ଏ କି ହରିର ଚରିତ
ଅଶ୍ୱମେଧ କଲେ ଘେନି ଋଷିଙ୍କି ସମସ୍ତ ।
କେବଣ କାରଣେ ହରି ନ କହିଲେ ମୋତେ
ଜାଣିବା ଯାଗ ସମାପ୍ତ କରିବେ କେମନ୍ତେ ।
ଏତେକ ବିଚାରି ପିତାମହଙ୍କର ସୁତ
ଶୋଣିତ ନଗ୍ରରେ ଯାଇ ମିଳିଲେ ତୁରିତ ।
ମୁନିଙ୍କୁ ଦେଖି କନ୍ଦମ୍ବାସୁର କଲା ପୂଜା
ଶତେ ଦଣ୍ଡବତ ହୋଇ ଶୁତଳକ ରାଜା ।
ବସନ କୁଣ୍ଡଳ ରତ୍ନମାଳା ଗଳେ ଦେଇ
ପୁଚ୍ଛଇ କେବଣ ପୁରୁ ଅଇଲ ଗୋସାଇଁ ।
ନାରଦ ବୋଇଲେ ଶୁଣ ହେ ଅସୁରେଶ୍ୱର
ଅଶ୍ୱମେଧ କରନ୍ତି ଯେ ଦେବ ଦାମୋଦର ।
ଯୁଗତେ ନାରାୟଣ ତୋ ବଂଶର ବଇରି
ପିତାକୁ ତୋହର ବଧ କଲେ ଦେବହରି ।
ମୀନରୂପ-ଧରି ଶଙ୍ଖାସୁର ବଧ କଲେ
କର୍ମରୂପେ ଶଙ୍ଖାସୁର ପୁତ୍ରକୁ ମାଇଲେ ।

ତାହାର ପୁତ୍ର ହୋଇଲା ଦୈତ୍ୟ ହିରଣ୍ୟାକ୍ଷ
ବରାହ ରୂପେ ତାହାକୁ ମାଇଲେ ପଦ୍ମାକ୍ଷ ।
ତାହାର ଭାଇ ଅଟଇ ହିରଣ୍ୟ କଶିପୁ
ନରସିଂହ ରୂପେ ତାର ବିଦାରିଲେ ବପୁ ।
ହିରଣ୍ୟକଶିପୁ ପୁତ୍ର ନାମ ପ୍ରହଲ୍ଲାଦ
କୃଷ୍ଣ ଭକତ ହୋଇ ସେ ରଖିଲା ସମ୍ପଦ ।
ସେ ପ୍ରହଲ୍ଲାଦର ପୁତ୍ର ବୈଲୋଚନ ବୀର
ସ୍ତ୍ରୀଶ ରୂପରେ ମାଇଲେ ତାକୁ ଦାମୋଦର ।
ବଇଲୋଚନର ପୁତ୍ର ହୋଇଲାକ ବଳି
ବାମନରୂପେ ପାତାଳେ ଦେଲେ ପାଦେ ଠେଲି
ବଳିର ନନ୍ଦନ ନାମ ଅଟେ ବାଣାସୁର
ନବଶତ ଅଠାବନେ ଭୁଜ ଛେଦି ତାର ।
ପୁନରପି ବାଣାସୁର ପୁତ୍ର ମୁଡ଼ାସୁର
ମରିଇଲେ ଅର୍ଜୁନର ହସ୍ତେ ଚକ୍ରଧର ।
ତୁ ମହାରାଜା ଧାର୍ମିକ ଅଟୁ ମହାଯୋଦ୍ଧ
ବଳଶାର୍ଯ୍ୟ ଥିଲେ ପିତା ଶତ୍ରୁକୁ ନରୋଧ ।
ସୁପୁତ୍ର ଯେବେ ପିତାକୁ ତାରଣ କରନ୍ତି
ଏକାବନ ପୁରୁଷ ତା ସ୍ୱର୍ଗକୁ ଗମନ୍ତି ।
ଯେବଣ ପୁତ୍ର ନ କରେ ପିତାକୁ କାରଣ
କାଳେ ହୁଅଇ ପତନ ଆପଣାର ପ୍ରାଣ ।
ଶ୍ରୀକୃଷ୍ଣ ଅର୍ଜୁନ ଯାଇ ଅଛନ୍ତି ପାତାଳେ
ଋଷିମାନେ ଅଛନ୍ତି ସେ ମହା ଯାଗଶାଳେ ।
ବ୍ରହ୍ମାଙ୍କର ବରେ ତୁମ୍ଭ ମହାବଳବନ୍ତା
ପାରୁ ଯେବେ ସୈନ୍ୟ ଘେନିଯାଅ ମହାରଥା ।
ନାରଦଙ୍କ ବାକ୍ୟେ ଦୈତ୍ୟ କରେ କଡ଼ତାପ
ଯଷ୍ଟି ପ୍ରହାରେ ଯେସନେ ଗର୍ଜେ କାଳସର୍ପ ।
ଶସ୍ତ୍ର ଧରିଣ ଅସୁରେଶ୍ୱର ଉଠେ ଗର୍ଜି
ପ୍ରତିଜ୍ଞା କରି ଉଠିଲା ସମଦଣ୍ଡ ସାଜି ।
ଏକପଦ୍ମ ଯୋଦ୍ଧା ସଙ୍ଗେ ଘେନି ଦଣ୍ଡଧାରୀ
କମ୍ପାଇ ଦୁନ୍ଦୁଭି ବାଦ୍ୟନାଦେ ଦଗମ୍ବର ।
ଗଦା ମୁଦ୍‌ଗର କୁନ୍ତ ଅସିପତ୍ର ଆଣି
ତର୍ଜନ୍ତି ଗର୍ଜନ୍ତି ଦୈତ୍ୟେ ସିନ୍ଧୁଘୋଷ ଜାଣି ।
ଧାମନ୍ତି ସେ କରେ ଶାଳ ଶିଳ ଶୂଳ ଘେନି
ତାହାଙ୍କର ପାଦଭରେ, କମ୍ପଇ ମେଦିନୀ ।
ଯେସନେ ସିନ୍ଧୁ ଉଛୁଳେ ଚନ୍ଦ୍ର ଦରଶନେ
ତଥା ଘୋଟିଆସନ୍ତି ଯେ ଦୈତ୍ୟବଳମାନେ ।

ତକ୍ଷଣ ନାରଦ ତହୁଁ ଗଲେ ଅନ୍ତର୍ଦ୍ଧାନେ
ଦ୍ୱାରକା ସନ୍ନିଧେ ଶୂନ୍ୟେ ରହିଲେ ଗୋପନେ
ଏହା ଶୁଣି ବୋଇଲେକ ମନୁ ଦଣ୍ଡଧର
ସଂଶୟ ଉପୁଜଇ ମୋ ମନେ ମୁନିବର ।
ସକଳ ଋଷି ମୁନିଙ୍କି ଯାଗଶାଳେ ବର
ନାରଦଙ୍କୁ ନ ବରିଲେ କପାଇଁ ଶ୍ରୀହରି ।
ଦେବଋଷି ନାରଦ ଯେ ବ୍ରହ୍ମାଙ୍କର ସୁତ
ଯାଗ ବିନାଶେ ବଳଇ କପାଁ ତାଙ୍କ ଚିତ୍ତ ।
ପୃଥିବୀରେ ଯେତେ ଦୁଷ୍ଟ ନାଶିଲେ ଶ୍ରୀହରି
ଏ ଦୁଷ୍ଟ ଅସୁର କପାଁ ଥିଲା ଦେହ ଧରି ।
ଯାହାଙ୍କର ନାମ ଅଟେ ପତିତପାବନ
ସେ କପାଇଁ ଯାଗ କଲେ ଆହେ ତପୋଧନ
ଅଗସ୍ତି ବୋଇଲେ ଶୁଣ ମନୁ ନରପତି
ଅନ୍ତର୍ଯ୍ୟାମୀ ନାଥ କୃଷ୍ଣ ଜଗତର ପତି ।
ମନେ ବିଚାରିଲେ ପୃଥ୍ୱୀଭାର ହେଲା ଅସ୍ତ
ଆମ୍ଭେ ଏଥର ଛାଡ଼ିଣ ଯିବା ନରକାସ୍ତ ।
ଏକମାତ୍ର ଅଛଇ ଯେ କଦମ୍ବ ଅସୁର
ଏହାର ଥିଲେ ଜଗତ କରିବ ସଂହାର ।
ମନ ମଧ୍ୟେ ମାୟାଧର ଏମନ୍ତ ବିଚାରି
ଯଜ୍ଞ ଆରମ୍ଭିଲେ ମୁନିମାନଙ୍କୁ ଯେ ବରି ।
ନାରଦ ମୁନିଙ୍କି ସେହି ନ ଦେଲେ ବରଣ
ନାରଦ ଯୋଗୁଁ ଅସୁର ହୋଇବ ନିଧନ ।
କଳହ ପ୍ରିୟ ସେ ମୁନି ଲଗାଇବେ କଳି
ଏଣୁ ତାଙ୍କୁ ନ କହିଲେ ପ୍ରଭୁ ବନମାଳୀ ।
ପରମ ବୈଷ୍ଣବ ସେହି ବ୍ରହ୍ମାଙ୍କର ସୁତ
ତାହାଙ୍କୁ ଅଜଣା ନାହିଁ କୃଷ୍ଣଙ୍କର ଚିତ୍ତ ।
ଲୋକଙ୍କର ହିତେ ସଦା ଥାନ୍ତି ସେହି ମୁନି
ସେ କି ଯାଗ ଭଙ୍ଗାଇବେ ଅଟନ୍ତି ଅଜ୍ଞାନ ।
ତୋ ମନୁ ଏବେ ସଂଶୟ ହୋଇଲା ତ ଦୂର
ସନ୍ତୋଷ ହୋଇଲା ଶୁଣି ମନୁ ନୃପବର ।

## ଯାଗ ଭଗ୍ନ

ଏଥୁଅନନ୍ତରେ କଥା ଶୁଣ ଦଣ୍ଡଧାରୀ
ଦ୍ୱାରକା ସିନ୍ଧୁର ତଟେ ଅସୁର ଆବୋର ।
ଯାନ ବାହନ ତେଜିଣ ହେଲେ କାମରୂପୀ
ପଶିଲେ ପ୍ରଳୟ ଘନଘମ ଶୂନ୍ୟବ୍ୟାପୀ ।
ଆକାଶେ ଲାଗଇ ସବୁ ଦୈତ୍ୟଙ୍କର ଶିର
ଅସୁରଙ୍କ ଦର୍ପେ ଘୂର୍ଣ୍ଣିଗଲା ସିନ୍ଧୁ ନୀର ।
ଦ୍ୱାରକା ଭୁବନେ ଯାଇଁ ହୋଇଲେ ପ୍ରବେଶ
ଜଦସୁ ଗିରକ ଜଣି ଦଶନ୍ତ ରାକ୍ଷସ ।
ଦେଖିଲେ ଆସି ଉଦ୍ଧବ ସାତ୍ୟକ ଏ ବେନି
ବାହାର ହୋଇଲେ ଦୁହେଁ କରେ ଶସ୍ତ୍ର ଘେନି
ଦଶନ୍ତ କୃଷ୍ଣ ସଦୃଶ ସେହି ବେନି ବୀର
ବଜ୍ର ମୁଦ୍ଗର ଆଣି କଲେକ ପ୍ରହାର ।
ଦେଖିଣ ଦୈତ୍ୟ ପାତିଲେ ନେଇ ବାମଅଙ୍ଗ
ଲାଗି ମସିଗୁଣ୍ଡା ହେଲା ପାଇ ଅଙ୍ଗ ସଙ୍ଗ ।
ପ୍ରହାର କରନ୍ତେ ଶସ୍ତ୍ର ଗଲେ ସତ୍ତ୍ୱ ହତ
ଦ୍ୱାରକାଭୁବନେ ଦୈତ୍ୟ ପଶିଲେ ତୁରତ ।
ଲୋହଦନ୍ତ କାଳଦନ୍ତ ବେନି ସେନାପତି
ଲୁହାର ଶର ଧନୁରେ ପୂରାଇ ବିନ୍ଧନ୍ତି ।
ଦୁଃସହ ପ୍ରତିଜ୍ଞା କରି କୋପେ ଲୋହଦନ୍ତ
ଉଦ୍ଧବ ଉପରେ ଗଦା ପିଟିଲା ପ୍ରଚଣ୍ଡ ।
ଉଦ୍ଧବ ପଡ଼ିଲା ଗଦାଘାତେ ମୂର୍ଚ୍ଛାଲୋଟି
ଅସିପଟ ଘେନି ତାର କାଟିଲାକ ଚୋଟି ।
ଉଦ୍ଧବ ନିଧନ ଦେଖି ଗାର ଶତ୍ରୁଜିତ
ବଜ୍ରବଳୀ ଗଦା ଘେନି ଧାମନ୍ତି ତ୍ୱରିତ ।
ଶସ୍ତ୍ର ବୁଲାନ୍ତେ ପଡ଼ିଲା ସୈନ୍ୟର ଆପଦ
ଦେଖି କୋପେ ଲୋହାସୁର ପ୍ରହାରିଲା ପାଦ ।
ଅସୁରର ପାଦଘାତେ ସେ ଉଗ୍ରନଶାସ୍ତ୍ରୀ
କର ଘାତେ ବଦାରଣ କଲା ତାର ଦେହୀ ।
ଉଦ୍ଧବ ଶତ୍ରାଜିତ ଏ ଦୁହେଁ ଗଲେ ନାଶ
ଦ୍ୱାରକାର ଭିତରକୁ ପଶିଲେ ରାକ୍ଷସ ।
ପ୍ରତାପୀ ବଇତେ ନାହିଁ ତାହାକୁ ଯେ ଭୟ
ଉଦସୁଗିର ପରାସ୍ତ ଦଶେ ତାଙ୍କ କାୟ ।
ଏ ସମୟେ ଦ୍ୱାରକାରେ ପ୍ରବେଶ ନାରଦ
ବଳଦେବଙ୍କୁ ବୋଇଲେ କାହିଁତ ଗୋବିନ୍ଦ
କଦମ୍ବାସୁର ବାହିଲା ତୋହର ପୁରକୁ
ପ୍ରଥମେ ବଧିଲା ଶତ୍ରାଜିତ ଉଦ୍ଧବଙ୍କୁ ।
ଶୁଣିଣ ଅତି ଆଶ୍ଚର୍ଯ୍ୟ ହେଲେ ବସୁଦେବ
କଦମ୍ବାସୁର ବୋଲିଣ କେବଣ ଦାନବ ।
ବୋଲନ୍ତି ଯାଦବ ଶୁଣ ଆହେ ଯଦୁବଂଶୀ
ବ୍ରହ୍ମାର ଅଂଶରେ ପୂର୍ବେ ଜାତ ପାଠ ଋଷି ।

ସେ ପାଠଋଷିର ଅଂଶେ ସିଂହିକାର ସୁତ
ତହୁଁ ଉତପତ୍ତି ହେଲେ ଅସୁରଙ୍କ ଗୋତ୍ର ।
ବାଣାସୁର ସେ ବଂଶରେ ହୋଇଲାକ ଜାତ
କଦମ୍ବାସୁର ଅଟଇ ତାର ନିଜ ସୁତ ।
ସେହି ତୋହର ସୁତକୁ ବାନ୍ଧିଲା କୋପେଣ
ଏହିକ୍ଷଣି ହରିବ ଏ ସୁତ ଦର୍ପ ଜାଣ ।
ଶୁଣି ବିସ୍ମୟ ହୋଇଲେ ଦେବ କାମପାଳ
ଧର୍ମଙ୍କ କେ ଦୁଷ୍ଟେ ଆସି କଲେ ମହାଗୋଳ ।
କରେଣ ଶସ୍ତ୍ର ଯେ ନାହିଁ ତପୋଧନ ବେଶ
ଧର୍ମ ସମସ୍ତରେ ଦୁଷ୍ଟ ଦେଉଛି ହିଂସା ।
ନାରଦ ବୋଇଲେ ଏହା ଛାଡ଼ ବଳରାମ
ଶତ୍ରୁ ଉପଦ୍ରବ ହେଲା ଆଉରି କି ଧର୍ମ ।
ନାରଦଙ୍କର ବଚନ କାମପାଳ ଶୁଣି
ରାଗେଣ ଟେକିଲେ ଶିରେ କେଉ ସପ୍ତଫେଣୀ ।
ସିଂହନାଦ କରି ଭୁଜେ ଧରିଲେ ଲଙ୍ଗଳ
ଦକ୍ଷିଣ ହସ୍ତରେ ଶୋଭେ ସୌନନ୍ଦ ମୁଷଳ ।
ଯାଗ ତ୍ୟାଗ କରି ବେଗେ ଉଠି ନୀଳାମ୍ବର
ଦେଖିଲେ ଦ୍ୱାରେ ଆବୋରି ଅଛନ୍ତି ଅସୁର ।
ଗିରିବର ସମ ଦୈତ୍ୟ ଉଚ୍ଚ ହୋଇଛନ୍ତି
ମହା ଗର୍ଜନ ତର୍ଜନ ଅସୁରେ କରନ୍ତି ।
ହସ୍ତେ ଅସ୍ତ୍ର ଶସ୍ତ୍ର ଧରି କୃଷ୍ଣପୁତ୍ରମାନେ
ଅସୁରଙ୍କ ଉପରକୁ ପ୍ରହାରନ୍ତି ଟାଣେ ।
ଯାଦବେ ଦାନବେ ହେଲେ ଏକସ୍ଥାନେ ଭେଟ
ଦେଖି ବଳରାମ ଗଲେ ଦେଇଣ କୁହାଟ ।
କୋପେ ଦୁରନ୍ତକ ବଳେ ଧଇଲେ ଆୟୁଧ
ଯାଦବେ ଦାନବେ ତହିଁ କଲେ ମହାଯୁଦ୍ଧ
ଶାମ୍ବ ଗଦ ପ୍ରଦ୍ୟୁମ୍ନ ଏ ହେଲେ ଏକ ଯୋଗ
ବନ ଭଙ୍ଗିବାକୁ ଯେହ୍ନେ ଧାଏଁ ମତ୍ତନାଗ ।
ଲୋହଦଣ୍ଡ କାଳଦଣ୍ଡ ବେନି ସେନାପତି
ଶାମ୍ବ ପ୍ରଦ୍ୟୁମ୍ନଙ୍କ ତୁଲେ ହୋଇ ଏକମୂର୍ତ୍ତି ।
ଲୋହସାର ଧନୁ କରେ ଧରି ଲୋହଦଣ୍ଡ
ପ୍ରଦ୍ୟୁମ୍ନ ଉପରେ ବାଣ ବିନ୍ଧଇ ପ୍ରଚଣ୍ଡ ।
ଅସୁର ନିଷ୍ଠୁର ରଣ ଦେଖିଣ ଅନଙ୍ଗ
ତୀକ୍ଷଣ ନାରାଚ ବିନ୍ଧିଲାକ ଅତି ବେଗ ।
ଦେଖନ୍ତେ ଅସୁରେ ସେହି ରହ୍ନମସ୍ତ ପୁଷ୍ପ
ଓଲଟିଣ ଶୂନ୍ୟେ କ୍ଷେପନ୍ତି ମହାତେଜ କରି ।

ଭସ୍ମରନ୍ତି ଯାଦବଙ୍କୁ ମାରିବା ସମୟରେ
ବଳେ ମାତ୍ର ବସିବା ଏ ରହ୍ନମସ୍ତ ପୁରେ ।
ଏତେକ ବଚନେ ଦୈତ୍ୟ ମହା ପରାକ୍ରମ
ଏକମୁଖ ହୋଇଣ ସେ ପଶିଲେ ସଂଗ୍ରାମ
ବର୍ଷନ୍ତି ଅସ୍ତ୍ର ଶସ୍ତ୍ର ସେ ଯୋଦ୍ଧାବଳ ଜାଣି
ଭକଡ଼ା ମାସରେ ଯେହ୍ନେ ବରଷଇ ପାଣି ।
କୋପେ ଲୋହଦଣ୍ଡ ବଜ୍ର ଘେନିଣ ବୁଲାଇ
ପ୍ରଦ୍ୟୁମ୍ନ ଉପରେ ବେଗେ ପ୍ରହାରନ୍ତେ ନେଇ ।
ଶସ୍ତ୍ର ଆଘାତ ଦେଖିଣ କୋପଇ ଅନଙ୍ଗ
କାମ୍ୟକଶର ପେଷିଲା ହୋଇ ଅତି ବେଗ ।
ଯେସନେକ ଆକାଶରୁ ପଡ଼େ ବଜ୍ରସୂଚି
ଅସୁରଙ୍କୁ ଅନ୍ଧକାରେ ନ ଦିଶଇ କିଛି ।
ପଡ଼ଇ ନାରାଚ ଏଣେ ଅତି ତୀକ୍ଷ୍ଣ ମୁନା
ପାତିକାରେ ଭେଦିଲାକ ଦୈତ୍ୟ ବଜ୍ରସେହ୍ନା ।
ଶସ୍ତ୍ର ଆଘାତେ ଦଇତ୍ୟ ଦେହ ହେଲା ଘାର
ବହଇ ଶୋଣିତ ତାର ରୋମେ ରୋମେ ଝର ।
ପଡ଼ିଲା ପ୍ରଦ୍ୟୁମ୍ନ ବାଣଘାତେ ଲୋହଦଣ୍ଡ
ଯାଇଣ ମୀନକେତନ ଛେଦିଲାକ ମୁଣ୍ଡ ।
କାଳଦଣ୍ଡନାମେ ଯେଉଁ ଦୈତ୍ୟ ସେନାପତି
ଶାମ୍ବକୁମର ସଙ୍ଗରେ ରଣରଙ୍ଗେ ମାତି ।
ନବ ନିଶିତ ଶୂଳ ଯେ ମାଇଲା ଉପିଷ୍ଟ
ଆଘାତେ ଶାମ୍ବ କୁମର ହୋଇଲା ଅଚେଷ୍ଟ ।
ସୋଦର ଅଚେଷ୍ଟ ଦେଖି ଶାମ୍ବର ଅଇର
କାଳଦଣ୍ଡ ସଙ୍ଗତରେ ସଂଗ୍ରାମ ଆଚରି ।
ଅନୁକ୍ଷଣେ ବାଣମାନ ବର୍ଷେ ମନସିଜ
ସହସ୍ର ପୁର କରିଣ ବେଢ଼ିଲେ ଦନୁଜ ।
ସହସ୍ର ଅୟୁତ କୋଟି କୋଟି ବାଣ ବନ୍ଧ
ଦାରୁଣ ଜାଲେ ପବନ ନ ପାରଇ ଭେଦ ।
ଲକ୍ଷେ ଷାଠିଏ ସହସ୍ର ଅଶୀଏ କୁମର
ଏକମୁଖ ହୋଇ ସର୍ବେ ବିନ୍ଧିଲେକ ଶର ।
ଆକାଶେ ଅଦୃଶ୍ୟ ହେଲେ ଦିନକର ଜ୍ୟୋତି
ଦାବାନଳ ଜଣି ଦିଶେ ଅସୁରଙ୍କ କାନ୍ତି ।
ବିକଟ ଦନ୍ତ ଖାଙ୍କର କେଶ ଊର୍ଦ୍ଧ୍ୱ ବାନ୍ଧୁ
ଚନ୍ଦ୍ର ଅର୍କ ଦେଖି ଯେହ୍ନେ ଘୋଟିଆସେ ରାହୁ ।
ପ୍ରଦ୍ୟୁମ୍ନ କାଳଦଣ୍ଡର ଯୁଦ୍ଧ ଅତି ଘୋର
ଲୋହସାର ବଡ଼ା ଏକ ପିଟିଲା ଅସୁର ।

ଫୁଟିଲା ସେହ୍ଲା ତାହାର ଗଳା ତାମ ବର୍ଣ୍ଣ
ପରଶୁ ମୁଦ୍‌ଗର କରେ ଘେନିଣ ଆମର୍ଷ ।
ପ୍ରଦ୍ୟୁମ୍ନର ଶରଘାଏ ପଡ଼ି କାଳଦଣ୍ଡ
ପୁନରପି ମୋହ ତେଜ ଉଠିଲା ପ୍ରଚଣ୍ଡ ।
କଙ୍କପକ୍ଷ ନାରାଚ ଯେ ଅତି ତୀକ୍ଷ୍ଣ ମୁନା
ସହସ୍ରଶରେ ପ୍ରଦ୍ୟୁମ୍ନ ଭେଦିଲା ତା ସେହ୍ଲା ।
ପୁଣି ମୋହଶର ଦେଖେ ଶମ୍ବର ଅଇର
କାଳଦଣ୍ଡ ପଡ଼ିଲାକ ଘାଏ ପ୍ରାଣ ହାରି ।
କରେ ଘେନିଣ ପ୍ରଦ୍ୟୁମ୍ନ ଅମୋଘ ଶକତି
ମାରନ୍ତେ ଅସୁର ହୃଦେ ଭେଦିଲା ତଡ଼ତି ।
ଶମ୍ବରପୁର ବହିଲା ଯେତେ ବାଳକାଳେ
ସାତ ଅକ୍ଷୌହିଣୀବଳ ଛେଦି କୁତୂହଳେ ।
ସମ୍ମୁରେ ଥିଲେ ତାହାର ଯେତେକ ଦନୁଜ
ଏକା ପ୍ରହାରେ ଛେଦିଲା ସବୁ ମନସିଜ ।
ପଡ଼ନ୍ତେ ଦୁରନ୍ତ ଦୈତ୍ୟ କଦମ୍ବା ଦେଖଇ
ବକ୍ରସେହ୍ଲା ଆଭରଣ କରିଣ ଧାମଇ ।
କୁନ୍ତେକ ଘେନ ଅସୁରେ ସମର ପ୍ରହାର
କୁନ୍ତଘାତେ ଅଧାଷ୍ଟମ ଶମ୍ବର ଅଇର ।
ମନସିଜ ଧାରଥି ଯେ ଲେଉଟାଇ ରଥ
ନିଜ ଭୁବନରେ ନେଇ କଲାକ ଗୁପତ ।
ଧାମଇ କଦମ୍ବାସୁର ବହୁ ମହାରୋଷ
ପଦ୍ମେକ ଯୋଦ୍ଧା ଘୋଡ଼ାଙ୍କଙ୍କ ତାର ପାଶ ।
ପ୍ରଦ୍ୟୁମ୍ନ ମୋହେ ପଡ଼ନ୍ତେ ଭଜିଲେ ଯାଦବେ
ଭୁବନ ମଧ୍ୟରେ ଯାଇ ପଶିଲେକ ସର୍ବେ ।
ପ୍ରଳୟ ମେଘ ଜିଣିଣ ଅସୁର ଗରଜ
ବାହାର ଗଡ଼ ଜଗତ ପକାଇଲା ଭଜ ।
କୁମର ରଣ ଛାଡ଼ନ୍ତେ ଦେଖି କାମପାଳ
ପଶନ୍ତି ବାହାର ଗଡ଼ ଜିଣି ଦୈତ୍ୟବଳ ।
ବହରି ପଡ଼ିଲା ଦ୍ୱାରକାକୁ ଏତେ କାଳେ
ଅକଳନ ଭୁବନରେ ପଶିଲେ ଚଣ୍ଡାଳେ ।
ଦୁସ୍ସହ ଦାନବଙ୍କୁ ବଳରାମ ଦେଖି
ହାର ବସେଥିଲେ ଯାଗଶାଳାକୁ ଉପେକ୍ଷି ।
ଯେସନେକ ଗିରିବର ଉଠଇ ପାତାଳୁ
ତେସନେ ଉଠିଲେ ବଳରାମ ଯାଗଶାଳୁ ।
ଦୁରନ୍ତଙ୍କ ବଳ ଦେଖି ଭୟ କଲେ ଋଷି
ଯାଗ ତେଜ ସର୍ବେ ରାମ କଣ୍ଠକ ଯେ ଆସି ।
ଅସୁରଙ୍କ ଦର୍ପ ଦେଖି ଜାତ ସର୍ବନାଶ
ବୋଲନ୍ତି କାର୍ତ୍ତିକ ତେଜଗଲୁ ଦେବ ହର ।
ନିଶ୍ଚୟ ଦ୍ୱାରକା ଶିଘ୍ର ହୋଇଲାକ ଶେଷ
ଜାଣି ଅପସର କେତେ ଗଲୁ ପୀତବାସ ।
ଦ୍ୱାରକା ଭୁବନେ ଉଠେ ଏସନକ ରୋଳ
ରାମ ରଖ ରଖ ବୋଲି ଶୁଭଇ ତହଳ ।
ସ୍ତ୍ରୀ ପୁରୁଷ ସମସ୍ତେ ଅଶ୍ରୁ ପୂର୍ଣ୍ଣ ଆଖି
ବୋଲନ୍ତି ତୋହର ଥାନ୍ତେ ହୋଇଲୁ ନିର୍ମାକ୍ଷି
ବୋଧନ୍ତି ମୁଷଳୀ ଶୋକ ନ କର ଗୋ ମାଏ
ମୋହର ଥାନ୍ତେ କୁମର କାହାକୁ ଗୋ ଭୟେ
ଦେବକୀ ବୋଇଲେ ବାବୁ ଥିଲେ ଜଗନ୍ନାଥ
ଦ୍ୱାରକାରେ ପଶିବାକୁ କେହୁ ସାମରଥ ।
ମାତାଙ୍କର ଏ ବଚନ ଦେଖି ନୀଳାମ୍ବର
ଅସୁରକୁ ଓଗାଳିଲେ କରି ପରିକାର ।
କାଳଚକ୍ର ପ୍ରାୟ ସ୍ୱାମୀ ନୟନ ବୁଲଇ
କୋପେ ରଣରୋଳ କଲେ ଦେବହଳୀ ଯାଇ
ଉଚସ୍ୱରେ ସିଂହରଡ଼ି ଦେଇ ଗର୍ଜି ଉଠି
ଦୁରନ୍ତ ଅସୁର ଗିରେ ନେଇ ଶସ୍ତ୍ର ପିଟି ।
ଲକ୍ଷେପୁର କର ବଳରାମଙ୍କୁ ସେ ବେଢ଼ି
ନର୍ଘାତ ଶବଦ ପ୍ରାୟେ ଦ୍ୟନ୍ତି ଘୋରରଡ଼ି ।
ସାତ୍ୟକି ଅକ୍ରୂର ଆଦି ଯେତେ ଯଦୁବୀର
ସମସ୍ତେ ମିଳିଲେ ବଳରାମଙ୍କ ସମ୍ମୁର ।
ଅସୁର ସଇନଙ୍କ ସେ ହେଲେ ପ୍ରତିକୂଳ୍ୟ
ନ ଯୁଝନ୍ତି ଦାନବେ ଯେ ଯୁଦ୍ଧେ ମହାମଲ୍ଲ ।
ଗଦା ମୁଦୁଗର ଶଲ୍ୟ କୁନ୍ତ ଚକ୍ର କାତି
ବଜ୍ରଳି ତେଜକୁ ଜିଣି ଶସ୍ତ୍ରେ ଝଲକନ୍ତି ।
ଆପେ ପୁଣି କାମପାଳ ଉଠିଲେ ସମରେ
କୋପେ ଶସ୍ତ୍ର ପ୍ରହାରନ୍ତି ଦୈତ୍ୟଙ୍କ ଉପରେ ।
ପର୍ବତ ସମାନ ହସ୍ତେ ଦିଶଇ ମୁଷଳ
ପିଟନ୍ତେ ଦାନବବଳ ହୋଇଲେ ବ୍ୟାକୁଳ ।
ବଳରାମଙ୍କ ପ୍ରହାରେ ପଡ଼ିଲେ ସଇନ
ହାହାକାର ଶବଦରେ କମ୍ପଇ ମେଦିନୀ ।
ଭାଗନ୍ତେ ଦାନବବଳ କଦମ୍ବା ଦେଖଇ
ଗର୍ଜନ ନାଦ କରିଣ ଅସୁର ଧାମଇଁ ।
କଦମ୍ବା ମୁଷଳୀ ଦୁହେଁ ହେଲେ ଏକଠିତ
ଯୁଦ୍ଧ କରନ୍ତି କି ମେରୁ ମନ୍ଦର ପର୍ବତ ।

ବଜ୍ରଶକତି ଆବର ଅମୋଘ ଶକତି
ବେନିଜନେ ମଗ୍ନମତି ସମରେ ହୁଅନ୍ତି ।
କୁଠାର ଆୟୁଧ ଧରି ଧାଇଁ ଦୈତ୍ୟପତି
ବଳରାମଙ୍କ ଉପରେ ପିଟିଲେ ତଡ଼ିତି ।
ଦେଖି କୋପେ ବଳରାମ ପିଟିଲେ ଲାଙ୍ଗଳ
ଶସ୍ତ୍ରେ ଶସ୍ତ୍ର ବାଜି ତହୁଁ ଉଠିଲା ଅନଳ ।
ଦଇତ୍ୟ ପ୍ରହାର କଲା ପୁନରପି ଶୂଳ
କୋପେ ପ୍ରହାରିଲେ ରାମ ସୌନନ୍ଦ ମୁଷଳ ।
ରାମ ପ୍ରହାରେ ନୋହିଲା ଅସୁରର କ୍ଷତି
ଦେଖି ସଙ୍କର୍ଷଣ କୋପେ ଧରି ବିଶ୍ୱମୂର୍ତ୍ତି ।
ପୁଣି ବଜ୍ରଲାଙ୍ଗଳକୁ କୋପେ ପ୍ରହାରନ୍ତେ
ସେ ପ୍ରହାରକୁ କଦମ୍ବା ମଣଇ କଷ୍ଟତେ ।
ଚନ୍ଦ୍ରାବଳ ଗଦା ଘେନି କଦମ୍ବା ଅସୁର
ଧାଇଁଣ ପିଟିଲା ବଳରାମଙ୍କ ଉପର ।
ଶସ୍ତ୍ର ଯହୁଁ ନ ଭେଦିଲା ଅସୁର ଶରୀର
ରାମ ତଳେ ଶସ୍ତ୍ର ରଖି ଭାବନ୍ତି ମନର ।
ପ୍ରଚଣ୍ଡ ଶସ୍ତ୍ର ପ୍ରହାରିଲା ନେଇଣ ଅସୁର
ରାମ ବକ୍ଷସ୍ଥଳେ ପଡ଼ି ହୋଇଲାକ ଚୂର ।
ଶସ୍ତ୍ର ବ୍ୟର୍ଥ ଦେଖିଣ ସେ ଅସୁର ରାଜନ
ରାମଙ୍କୁ ଶସ୍ତ୍ର ପ୍ରହାର କରେ ପୁଣ ପୁଣ ।
ବଜ୍ରଶକ୍ତି ଘେନି ପୁଣି କଦମ୍ବା ପିଟିଲା
ସମରେ ବଳରାମଙ୍କ ଆରମ୍ଭ ଭାଜିଲା ।
ଶସ୍ତ୍ରାଘାତେ ବଳରାମ ହୋଇଲେ ଅଜ୍ଞାନ
ପୁଣ ପୁଣ ପ୍ରହାରିଲେ ରାଗେ ଦୈତ୍ୟରାଣ ।
ନଶ୍ଚେଷ୍ଟ ହୋଇଲେ ଯହୁଁ ରଣେ ଦେବ ହଳୀ
କୋଳ କରିଣ କଦମ୍ବା ଆକର୍ଷିଲା ତୋଳି
ଧରିଣ ବଳରାମଙ୍କୁ ପକାଇଲା କାନ୍ଧେ
ବାହୁଡ଼ିଣି ରଣ ଜୟକରି ଶଙ୍ଖ ନାଦେ ।
ଦ୍ୱାରକା ଭୁବନ ମଧ୍ୟେ ପଶିଲା ଅସୁର
ଅନେକ ଧନ ଭଣ୍ଡାର କରିଲା ସେ ଜୁର ।
ଜୟ ଶଙ୍ଖ ବଜାଇଣ ଯହୁଁ ଦୈତ୍ୟମଣି
ପ୍ରଦ୍ୟୁମ୍ନ ଶାମ୍ବ ଗଦକୁ ଧଇଲା ସେ ପୁଣି ।
ଦ୍ୱାରକା ଭୁବନ ତେଜ ଦନୁଜ ଚଳିଲା
ମଣିନାଗ ପର୍ବତରେ ସେ ଜନ ରହିଲା ।
ଅନେକ ଯାଦବବଳ ପଡ଼ିଯାନ୍ତେ ରଣେ
ଦେଖି ଆଶ୍ଚର୍ଯ୍ୟ ହୋଇଲେ ସ୍ୱର୍ଗେ ଦେବଗଣେ

ଟଙ୍କଡପୁରବାସିନି ଦେବି ଗୋ ଶାରଳା
ତୋହର ପାଦେ ଶରଣ ପଶଇ ଶାରଳା ।

---

## କଦମ୍ବାସୁର ବଧ

ଅଗସ୍ତି କହିଲେ ବୈବସ୍ୱତ ମନୁ ଆଗେ
ଏପରି ଘଟିଲା ଏଣେ ଅଶ୍ୱମେଧ ଯାଗେ ।
ସେ ମୁନି କୃଷ୍ଣ ଯେ ଗଲେ ପାତାଳ ଭୁବନେ
ନଶ୍ଚିନ୍ତ ହୋଇ ରହିଲେ ବସ୍ତୁ ଦରଶନେ ।
ଅଗସ୍ତି ବୋଇଲେ ଶୁଣ ବଳଙ୍କାଧିପତି
ବ୍ରାହ୍ମଣର ସାତପୁତ୍ର ମାଗିଲେ ଶ୍ରୀପତି ।
ସେ ପୁତ୍ରଙ୍କୁ ଆଣି ଯହୁଁ ମହାବସ୍ତୁ ଦେଲେ
ଘେନି ତାହାଙ୍କୁ ଶ୍ରୀକୃଷ୍ଣ ପାର୍ଥ ବାହୁଡ଼ିଲେ ।
ପାତାଳ ଭୁବନୁ ଦେବ ହୋଇଲେ ବାହାର
ଅର୍ଜ୍ଜୁନକୁ ତିଆରନ୍ତି ପଥେ ଦାମୋଦର ।
ବୈକୁଣ୍ଠେ ପଡ଼ିଲା ଯେଉଁ ଯେଉଁ କଥାମାନ
କାହା ଆଗେ ନ କହିବୁ ଆରେ ଅରଜୁନ !
ନ ଜାଣିବେ ଯୁଧିଷ୍ଠିର ଭୀମ ସହଦେବ
ନକୁଳ ସୁଭଦ୍ରା କୃଷ୍ଣା ଯେତେକ ଯାଦବ ।
ଏ କଥା ଯେବେ ଅର୍ଜ୍ଜୁନ ହୋଇବ ବ୍ୟକତ
କାଳେ କାଳେ ଭେଟି ମୋର ନ ପାଇବୁ ଭୂତ
ଏହିରୂପେ ତିଆରିଣ ଦେବ ଜନାର୍ଦ୍ଦନ
ମଧ୍ୟଭୁବନରେ ଯାଇ ମିଳିଲେ ବହନ ।
ପାତାଳପୁରୁ ବାହୁଡ଼ି ଆସନ୍ତେ ଗୋବିନ୍ଦ
ଏକାଳେ ତାହାଙ୍କୁ ଭେଟି କହିଲେ ନାରଦ ।
ବୋଇଲେ ଯେ ପାତାଳକୁ ଗଲ ବାସୁଦେବ
ତୋ ପୁରକୁ ଧାଡ଼ିଦେଲା କଦମ୍ବା ଦାନବ ।
ଅନେକ ସୈନ୍ୟର ତୁଲେ ଦୈତ୍ୟ ମହାବଳ
ଭାଙ୍ଗିଲା ଦ୍ୱାରକାପୁର ତୋହର ସକଳ ।
ସମର କରି ମାଇଲା ବହୁ ଯାଦବଙ୍କୁ
ପୁଣି ବଧ କଲା ଶାମ୍ବ ଗଦ ପ୍ରଦ୍ୟୁମ୍ନଙ୍କୁ ।
ଧନ ଭଣ୍ଡାର ସମସ୍ତ ଧ୍ୱଂସିଲା ଅସୁର
ବିଶେଷେ ଭାଙ୍ଗିଲା ଧର୍ମଯଜ୍ଞ ଯେ ତୋହର
ବଳରାମଙ୍କୁ ତୋହର ଧରିନେଲା କୋପେ ।
ମଣିନାଗ ପର୍ବତରେ ଅଛନ୍ତି କୌଣପେ ।
ନାରଦଙ୍କ ମୁଖୁ ଏସନକ ବାକ୍ୟ ଶୁଣି
ଅତି ବିଷାଦିତ ହେଲେ ଦେବ ଚକ୍ରପାଣି ।

ଅର୍ଜ୍ଜୁନ ବୋଇଲେ ଦେବପୁରରେ କି କାର୍ଯ୍ୟ
ମଣିନାଗ ପର୍ବତକୁ ଚଳ ଦେବରାଜ ।
ଦେଖିବା ଦାନବଙ୍କର କେଉଁ ପରାକ୍ରମ
ଧରି ନେବାକୁ ରାମଙ୍କୁ ହୋଇଲେ ସେ କ୍ଷମ
ଶୁଣି କରି ଚିନ୍ତା କଲେ ଦେବ ନାରାୟଣ
ମଣିନାଗ ପର୍ବତରେ ବିଜୟ ତକ୍ଷଣ ।
ଦେଖିଲେ ରାକ୍ଷସବନେ ପୂର୍ଣ୍ଣ ଶଇନ
ମାଂସ ମଦିରା ଭୋଜନେ ହୋଇଛନ୍ତି ଭୋଳ ।
ନିଶାଣ ଝମକ ପୁଣି ବଜାଇ ବାଉଣ୍ଡି
ନାଚନ୍ତି ସେମାନେ ତହିଁ ଖେଳେ ନାଟଖଣ୍ଡି
ଏମନ୍ତ ଦେଖିଲେ ଯହୁଁ ଦେବ ଚକ୍ରଧର
ମନମଧ୍ୟେ ସୁମରିଲେ ବିନତା କୁମର ।
ରମ୍ୟକ ଦ୍ୱୀପରେ ରହିଥିଲା ପକ୍ଷୀବର
ସନ୍ନିଧେ ପ୍ରବେଶ ହେଲା ଆସିଣ ସତ୍ୱର ।
ଶଙ୍ଖ ଚକ୍ର ଗଦା ଶାର୍ଙ୍ଗଧର ଚକ୍ରପାଣି
ସାରବେଶ ହେଲେ କଟେ ବାନ୍ଧି କୋଣବେଣି
ଗାଣ୍ଡୀବ ଯେ ପାଶୁପତ ଅକ୍ଷୟ ତୂଣୀର
ଯେତେ ଦ୍ରବ୍ୟ ବେଶ ହେଲେ ପାର୍ଥ ଧନୁର୍ଦ୍ଧର ।
ପାଞ୍ଚଜନ୍ୟ ଶଙ୍ଖଧ୍ୱନି କରିଣ ଅଚ୍ୟୁତ
ଆରୋହିଲେ ଖଗପୃଷ୍ଠେ ହୋଇ କୋପାନ୍ୱିତ
ସେ ଶଙ୍ଖର ଶବଦରେ କମ୍ପେ ବସୁନ୍ଧରା
ସମୁଦ୍ର ଉଛୁଳି ଜଳ ମାଡ଼ିଗଲା ଧରା ।
ଶ୍ରୀକୃଷ୍ଣଙ୍କ ତେଜରାଶି ଚୌଦିଗେ ପ୍ରକାଶେ
ଦେଖି କୋପାନଳେ ତାଙ୍କୁ ଗ୍ରହିଁଲେ ରାକ୍ଷସେ
ନାରଦ ବୋଇଲେ ଶୁଣ ହେ କଦମ୍ବାସୁର
ଏହି ଯେ ଶ୍ରୀକୃଷ୍ଣ ଜାଣ ଦେବ ଦାମୋଦର ।
ଏହି ସିନା ତୋର ପିତାମହର ବଇରି
ଏହି ଯେ ଅସୁର କୁଳ ପାରିବ ସଂହାରି ।
ରାମଙ୍କୁ ଆଣିଲୁ ସେତ ନ ଜାଣଇ କିଛି
ଏହାକୁ ଜିଣିଲେ ଏଣେ କାର୍ଯ୍ୟ ତୋର ଅଛି
ନାରଦଙ୍କ ଏ ବଚନ ଶୁଣିଣ ରାକ୍ଷସ
ସୈନ୍ୟ ପଛକରି ଆପେ ଆଗରେ ପ୍ରବେଶ ।
କୌମୋଦକୀ ଗଦାକରେ ଘେନି ଯଦୁସାଇଁ
ଗରୁଡ଼ ପିଠିରୁ ଦେବ ପଡ଼ିଲେକ ଡେଇଁ ।
ପବନହୁଁ ବେଗ ଗତି ଗଦାବର ହସ୍ତେ
ରାଗେ ପିଟିଲେ କଦମ୍ବା ଦଇତର ମାଥେ ।

ଗଦା ପିଟନ୍ତେ ତେଉଁଣ କଦମ୍ବା ଧରିଲା
କୌମୋଦକୀ ଗଦାବର ବ୍ୟର୍ଥ ହୋଇଗଲା ।
ଗଦା ବାହୁଡ଼ନ୍ତେ ଲଜ୍ଜା ହେଲେ ଦେବବର
କଦମ୍ବା ଧଇଲା କୃଷ୍ଣେ କରକୁ ପ୍ରସାରି ।
ସେହି ଗଦାବର କୋପେ ହସ୍ତରେ ବୁଲାଇ
କୃଷ୍ଣ ଉପରେ ପିଟିଲା ଦୈତ୍ୟବର ନେଇ ।
ଆପଣା ଗଦା ପଡ଼ନ୍ତେ ଆପଣାର ଅନ୍ଧ
ମୂର୍ଚ୍ଛାଗତ ହୋଇ ତହିଁ ପଡ଼ିଲେ ଗୋବିନ୍ଦ ।
ଶ୍ରୀକୃଷ୍ଣ ପଡ଼ିବା ଦେଖି ପାଣ୍ଡୁର ନନ୍ଦନ
ଦେବଦତ୍ତ ଶଙ୍ଖନାଦ କଲେ ସଘନନ ।
ଯେତେବେଳେ କୃଷ୍ଣ ତହିଁ ହେଲେ ଅଚେତନ
ନାଗପାଶେ କଲା ତାଙ୍କୁ ଅସୁର ବନ୍ଧନ ।
ତା ଦେଖି ଶର ସନ୍ଧାନ କଲେ ଫାଲ୍‌ଗୁନ
ପେଷିଲେ ସେ ପାଶୁପତ ଶର ହସ୍ତେ ଘେନ ।
ଲୋମ ଲୋମରେ ଅସୁର ଦେହରେ ଫୁଟଇ
ଝରି ଝରି ହୋଇ ରକ୍ତ ଅଙ୍ଗରୁ ବହଇ ।
ପୁଣି ପେଷିଲା ସେ ଶରେ କାଳଚକ୍ର ଘେନ
ଛେଦି ପକାଇଲା ଯେତେ ଦଇତ ସଇନ ।
ସୈନ୍ୟ ସମାପତ ହେବା ଦେଖିଣ କଦମ୍ବ
ଅର୍ଜ୍ଜୁନ ସଙ୍ଗତେ ଯୁଦ୍ଧ କରେ ବହୁ ଦମ୍ଭ ।
ସହସ୍ରେ ଶର ପେଷିଲା କଦମ୍ବା ଅସୁର
ନିମିଷ ମାତ୍ରକେ ଘୋଟିଗଲା ସେ ଅମ୍ବର ।
ପଞ୍ଚଦଶ ବାଣ ବେଗେ ପେଷି ଫାଲ୍‌ଗୁନ
ଦଇତର ଶର ସବୁ ପକାଇଲା ହାଣି ।
ପୁଣି ସେ କଦମ୍ବାସୁର ଲୌହଦଣ୍ଡ ମାରେ
ପନ୍ନଗାଶର ପେଷିଲା ପୁଣି କୋପଭରେ ।
ଫୁଫୁକାର ଧ୍ୱନି କରି ଗର୍ଜନ୍ତେ ଉରଗେ
ଧାଇଁ ଯାଇଁ ଖଗବର ଗିଳିଲାକ ବେଗେ ।
ଚଞ୍ଚୁଡ଼ ମାଇଲା ବହୁ ସୈନ୍ୟ ପକ୍ଷବାତେ
ଉଡ଼ି ସମୁଦ୍ରେ ପଡ଼ିଲେ ଅସୁର ସମସ୍ତେ ।
ମଣିନାଗ ସର୍ପକୁ ଯେ ତହିଁ ଖଗେଶ୍ୱର
ଦେଖଇ ନାଗେ ବନ୍ଧନ କୃଷ୍ଣ କଳେବର ।
ଗରୁଡ଼କୁ ଦେଖି ପଳାଇଲେ ସର୍ପଗଣ
ଧାଇଁ ଗରୁଡ଼ ଭକ୍ଷିଲା ତାହାଙ୍କୁ ବହନ ।
ଚୁହିଁବେଲା ରାମକୃଷ୍ଣ ରଣେ ଅଚେତନ,
ଅମର ପୁରକୁ ପକ୍ଷୀ ଚଳିଲା ବହନ ।

ଇନ୍ଦ୍ର ସ୍ତମ୍ଭରେ କହିଲ ସର୍ପଙ୍କ ଅଭିର
ଶୁଣି ଇନ୍ଦ୍ରଗବେ ମନ ମଧ୍ୟେ ଭୟ କରି ।
ଅମୃତ ବର୍ଷିଲ ଆଣି ସ୍ୱର୍ଗୁ ସହସ୍ରାକ୍ଷ
ଚେତନା ପାଇ ଉଠିଲେ ରାମ ପଙ୍କଜାକ୍ଷ ।
ରାମକୃଷ୍ଣ ବେନି ଯହୁଁ ସଚେତ ହୋଇଲେ
ବନସୂଲ୍ଲବରେ ଇନ୍ଦ୍ର ଦେବତା ବୋଇଲେ ।
ଅତି ବଳବନ୍ତ ଅଟୁ ତୁ ହୋ ବଳରାମ
ଘୋର ଅସୁର ଗୋଷ୍ଠାଏ ଜିଣିଲ ସଂଗ୍ରାମ ।
ଏତେ ବଡ଼ ପଣ ତୋର କେଉଁଆଡ଼େ ଗଲା
ଅସୁରର ହାତେ ପୁଣି ହିଂସା ହୋଇଲା ।
ବୃହସ୍ପତି ବୋଇଲେ ତୁ ଶୁଣ ଆଖଣ୍ଡଳ
ଦ୍ୱାପର ଯୁଗର ଶେଷ ହେବ କଳିକାଳ ।
ତେଣୁ ବଳରାମଙ୍କର ବଳ ହେଲା କ୍ଷୀଣ
ଆବର ମଧ୍ୟ ଭୁବନେ ଛନ୍ତି କି କାରଣ ।
ମହା ବସ୍ତୁ ତୁମ୍ଭଙ୍କୁ ଯେ କରନ୍ତି ଆହ୍ୱାନ
ମୋହ ତେଜ ବୈକୁଣ୍ଠକୁ କର ଆଗମନ ।
ଅନେକ ଭୋଗ ଭୁଞ୍ଜିଲ ହରି ମଧ୍ୟ ପୁରେ
ଦଇବ ବିପାକ ଏବେ ପଡ଼ିଲା ଉପରେ ।
ଶ୍ରୀକୃଷ୍ଣ ବୋଇଲେ ଯାଉଅଛୁ ଆଖଣ୍ଡଳ
ଦଇତ୍ୟେ ଅର୍ଜୁନ କରୁଥିବେ ଯେ କଣ୍ଟାଳ ।
ଏହା କହି ବେନିତେଯୁ ତଡ଼ି ବେନିଭାଇ
ମଣିନାଗ ପର୍ବତରେ ପ୍ରବେଶିଲେ ଯାଇଁ ।
ଦେଖିଲେ ଦୈତ୍ୟଙ୍କ ମାଂସ ହୋଇ ଖଣ୍ଡଖଣ୍ଡ
ପାଞ୍ଚକୋଶ ମାଡ଼ ପଡ଼ିଅଛି ମୃତପିଣ୍ଡ ।
ରାମକୃଷ୍ଣଙ୍କୁ ଦେଖି ସାନନ୍ଦ ଫାଲଗୁନ
ଅନେକ ପ୍ରଶଂସା କଲେ ତାଙ୍କୁ ଭାଇବେନ ।
ମହୀର ଆନନ୍ଦ କଏ ପାରିବ ଯେ କଳି
ମାତନ୍ତି କବନ୍ଧେ ରକ୍ତ ପଡ଼ଇ ନକଳି ।
ଏ ସମସ୍ତେ ବଜେ କଲେ ରାମ ଶିରୀପତି
ଅର୍ଜୁନ କଦମ୍ବାସୁର ସମର କରନ୍ତି ।
ଦେଖି ରୋଷେ ଧାମନ୍ତି ଯେ ଦେବ କାମପାଳ
ରାମଙ୍କୁ ଦନୁଜ ଆସି କଲାକ ପ୍ରହାର ।
ଦେଖି କାମପାଳ କଲେ ଗରୁଡ଼କୁ ତେଜ୍ୟା
ହଳମୁଷଳ ଘେନିଲେ କରେ ଦେବରାଜା ।
ବଳରାମ ବୋଇଲେ ତୁ ଶୁଣ ଫାଲଗୁନ
ମୋ ସଙ୍ଗେ ଅସୁର ଯୁଦ୍ଧ କରୁ ଶସ୍ତ୍ର ଘେନ ।

ବଳରାମଙ୍କ ବଚନ ଶୁଣି ପାର୍ଥବୀର
ବୋଲେ ତୁମ୍ଭ ହସ୍ତେ ମୃତ୍ୟୁ ଅଛଇ ଏହାର ।
ଏଣେ ଅସୁର ଯେ ଧାଇଁଅଛି ରୋଷ କରି
ବଳରାମଙ୍କ ଆଗରେ ମିଳିଲାକ ଯାଇ ।
ଦେଖି ହଳମୁଷଳ ମାଇଲେ ବଳରାମ
ସନ୍ଧି ତାହା ରଣରଙ୍ଗୀ ହୁଏ ଭମ ଭମ ।
ଅସିଚନ୍ଦ୍ର ମାଇଲା ଯେ ହୋଇଣ ପ୍ରଚଣ୍ଡ
ରାମ ଦେହେ ବାଜି ତାହା ହେଲା ଖଣ୍ଡ ଖଣ୍ଡ
ପୁନରପି ପ୍ରହାରିଲା ଧରି ଲୋହ ଦଣ୍ଡ
ନବଲକ୍ଷ ଭାର ଗଦା ଘଡ଼ ରାମମୁଣ୍ଡ ।
ଭାଙ୍ଗି ଚୂର ହୋଇଗଲା ତେଡେ ଗଦାବର
ପ୍ରହାରିଲେ ବଜ୍ରହଳ ନେଇ ନୀଳାମ୍ବର ।
ବୁଲାଇ ଫିଟେନ୍ତେ ତାହା ଧରି କଉଣପ
ରାମ ବକ୍ଷସ୍ଥଳେ କଲା ସେ ଗଦା ନିକ୍ଷେପ ।
ଧାଡ଼କାରେ ଧଇଲେ ସେ ଅସ୍ତ୍ର ନୀଳାମ୍ବର
ଲେଉଟି ପେଷିଲେ ତାକୁ ଦନୁଜ ଶରୀର ।
ଅନ୍ୟ ଅସ୍ତ୍ର ନ ମଉକ କର ପାଇଅଛି
ଆକାଶ ମାର୍ଗେ ଧାଇଣ ବୋଇଲେ ବିରଞ୍ଚି ।
ମୀନଚିହ୍ନକୁ ହେପିବେ ଯେବେ ହଳଧର
ତେବେ ପ୍ରାଣେ ହତ ହେବ କଦମ୍ବା ଅସୁର
ମୀନଚିହ୍ନକୁ ଯେ ଦେବ କରିଲେ ସ୍ମରଣ
ଆନନ୍ଦରେ ଦେଲେ ବଳରାମେ ଦେବଗଣ ।
ସେ ମୀନଚିହ୍ନକୁ ରାମ ଧଇଲେକ କରେ
ଆକ୍ରୋଶି ମାଇଲେ ଦେବ କଦମ୍ବା ଉପରେ
ଚନ୍ଦ୍ର ବିଦ୍ୟୁତରେ ଭାଙ୍ଗି ଗଲା ତାର ଦର୍ପ
ବେନିଖଣ୍ଡ ହୋଇ ଛିଡ଼ିଗଲା କଉଣପ ।
ଅସୁର ସଙ୍ଗରେ ଯୋଦ୍ଧା ଏକପଦ୍ମ ଥିଲେ
ଅର୍ଜୁନର ନାରାଚରେ ସମସ୍ତେ ପଡ଼ିଲେ ।
ଯେ ଶ୍ରୀକୃଷ୍ଣ ଯେଡ଼ୁ ଜାଣ ଅଟଇ ଅର୍ଜୁନ
ରାସ ନବାଉଣକାସି ସେହୁ ବେନିଜନ ।
କଦମ୍ବା ଅସୁର ବଧ ଅନ୍ତେ ଯେ ଯେ କଥା
କହୁଅଛି ତାହା ଏବେ ଶୁଣ ମହାରଥା ।
ଶାମ୍ବ ଗଦ ପ୍ରଦ୍ୟୁମ୍ନଙ୍କୁ କୃଷ୍ଣ ଜୀଆଇଲେ
ପାର୍ଥ ବଳରାମ ସହ ପୁରକୁ ଗମିଲେ ।
ମରିଥିଲେ ବ୍ରାହ୍ମଣର ସାତ ଯେ କୁମର
ସଙ୍ଗରେ ଆଣିଲେ ସମସ୍ତଙ୍କୁ ଚକ୍ରଧର ।

ବୈନତେୟର ପୃଷ୍ଠରେ ଚଢ଼ି ନାରାୟଣ
ଦ୍ୱାରକାପୁରେ ବିଜୟ ହେଲେ ତତକ୍ଷଣ ।
ଦେଖନ୍ତି ଯାଦବେ ଦ୍ୱାରେ ଅଛନ୍ତି ଯେ ପଡ଼ି
ସୁବର୍ଣ୍ଣ ନଗରୀ ଖଣ୍ଡ ଖଣ୍ଡ ହୋଇ ଝଡ଼ି ।
ଯେତେ ଯାଦବେ ଆଗରୁ ମରି ପଡ଼ିଥିଲେ
ଶ୍ରୀକୃଷ୍ଣ ପ୍ରସାଦେ ସର୍ବେ ଚେତନା ଲଭିଲେ ।
ନନ୍ଦ ବସୁଦେବ ଉଗ୍ରସେନର ସହିତେ
ଆନନ୍ଦାଶ୍ରୁ ଜଳପୂର୍ଣ୍ଣ ସର୍ବଙ୍କର ନେତ୍ରେ ।
ପାତାଳପୁରକୁ ଭୁଲି ଯାଉନ୍ତି ଦେବବର
ଏତେ ପ୍ରମାଦ ଘଟିଲା ଦ୍ୱାରକା ନଗର ।
ତହୁଁ ଦ୍ୱାରକାରେ ହେଲେ ସର୍ବେ ମହୋତ୍ସବ
କୃଷ୍ଣ ସନ୍ନିଧେ ମିଳିଲା ବିପ୍ର ଯେ ସୁଦେବ ।
କୃଷ୍ଣ ତାଙ୍କୁ ଦେଖି ବୋଇଲେ ହେ ଦ୍ୱିଜବର
ତବ ପୁତ୍ରପାଇଁ ଗଲୁ ନଷ୍ଟ ହେଲା ପୁର ।
କର୍ମର ଅବଳେ ତବ ପୁତ୍ର ନାଶଗଲେ
ବାହୁଡ଼ାଇ ଆଣିବ ତେ ତାଙ୍କୁ ବୁଦ୍ଧିବଳେ ।
ଏପରି ଦ୍ୱିଜକୁ କୃଷ୍ଣ ବହୁଛଳ କଲେ
ପୁତ୍ରଙ୍କୁ ଦେଖାଇ ଚାହିଁ ନିଅ ଯେ ବୋଇଲେ
ବ୍ରାହ୍ମଣ ବୋଇଲା ଦେବ ଶୁଣସି ଅଚ୍ୟୁତ
କେବଳ ମାତ୍ର ଜନମ ହେଲେ ସାତପୁତ୍ର ।
ନ ଦେଖିଲି ନ ଖୋଇଲି ନ ଧଇଲି କୋଳେ
ତୁ ତାହାଙ୍କୁ ଆଣି ଦେଲୁ ତୋର ବୁଦ୍ଧିବଳେ
ସାତ ପୁତ୍ରଙ୍କୁ ପାଇଲି ଅଣଆଶ ବର୍ଷେ
ନ ବଞ୍ଚିଲେ ଦଣ୍ଡେ କ୍ଷଣେ ଦିନେ ଅବା ମାସେ
ମୁହିଁ ଏହାଙ୍କୁ ଚାହିଁକି କେନ୍ତେ ଦାମୋଦର
ମୃତ୍ୟୁପୁରୁ ଆଣିବାକୁ ଶକ୍ୟ ଯେ ତାହାର ।
ଗୋବିନ୍ଦ ବୋଇଲେ ପାର୍ଥ ମୃତ୍ୟୁ ହେଲା ପାର
ପୁତ୍ରଙ୍କୁ ଯତନ କର ସମ୍ଭାଳ ତୋହର ।
ପାର୍ଥ ବୋଲେ ମୋର ଦେବା ହେଲା ସାତବଳା
ଏ ଦ୍ୱାରକା ଭୁବନରୁ ଦେନ ତାଙ୍କୁ ପଳା ।
ସୁଦର୍ଶନ ଚକ୍ର ଯହିଁ ତୁମେ ଶତବାର
ମାନ୍ତୁ ପଡ଼ି ଶତଖଣ୍ଡ ହୁଅଇ ଶରୀର ।
ଏ ଭୁବନେ ପଶିବାକୁ କାର ଶକ୍ତି ଅଛି
ପାର୍ଥ ବୋଲେ ପଳା ଯେବେ ଜୀବେ ଆଶା ଅଛି
ଏବେ ଦେଖ କେଉଁପରି ପ୍ରମାଦ ପଡ଼ିଲା
ଅସୁର ମାନଙ୍କ ଆସି ଏ ପୁର ଧ୍ୱଂସିଲା ।
ନଷ୍ଟେଁ କୃଷ୍ଣ ଗୁଡ଼ିକେଣି ଏ ପୁରର ସ୍ନେହ
ପୁତ୍ରକୁ ଘେନ ବ୍ରାହ୍ମଣ ଏଥି ତୁ ନ ରହ ।
ଯାଗ ସମାପତ କରି ସେ ପ୍ରଭୁ ଗୋବିନ୍ଦ
ପ୍ରଣାମ କଲେକ ଧରି ବସୁଦେବ ପାଦ ।
ବଳରାମ ଯୁଧିଷ୍ଠିରଙ୍କୁ ନମସ୍କାର କରି
ଆପଣା ମନ୍ଦିରେ ବିଜେ କଲେ ଦେବହରି ।
ଭୀମକୁ ସେ ଆଲିଙ୍ଗନ କରିଣ ମୁରାରି
ସନ୍ତୋଷ ମନେ ରହିଲେ ଆପଣାର ପୁରୀ ।
ତହୁଁ ଯୁଧିଷ୍ଠି ପୁରରେ ଯିବାକୁ ଇଚ୍ଛିଲେ
ମାନ୍ୟକରି ତାହାଙ୍କୁ ଶ୍ରୀକୃଷ୍ଣ ବିଦା କଲେ ।
ଦ୍ୱାରକାରୁ ବାହାରି ସେ ଯୁଧିଷ୍ଠି ଚଳିଲେ
ଆନନ୍ଦରେ ଇନ୍ଦ୍ରପ୍ରସ୍ଥେ ଯାଇ ପ୍ରବେଶିଲେ ।
ଆନନ୍ଦେ ଯୁଧିଷ୍ଠି ତହୁଁ ପାଳିଲେ ପ୍ରଜାଙ୍କୁ
କରୁଣରେ ଡାକି ପଚାରିଲେ ଅର୍ଜ୍ଜୁନକୁ ।
କୃଷ୍ଣଙ୍କ ସହିତେ ତୁମ୍ଭେ କେଉଁଠାକୁ ଗଲ
କେଉଁଠାରୁ ବ୍ରାହ୍ମଣର ପୁତ୍ର ଆଣିଦେଲ ।
କେଉଁଠାରେ ଥିଲେ ତାହା ଜାଣିଲ କପରି
ସେ ସକଳ କଥା ମୋତେ କହ ତୁ ବିସ୍ତାରି
ବୋଲନ୍ତି ଅର୍ଜ୍ଜୁନ ଶୁଣ ଆହେ ଜ୍ୟେଷ୍ଠଭ୍ରାତ
ଯାଆନ୍ତେ ଭୁବନେ ଏକ ଦେଖିଲୁ ଭୁଗର୍ଭ ।
ନଗରୁ ବାହାରେ କୃଷ୍ଣ ଥୋଇ ମୋତେ ଗଲେ
ଯାଇ ଶ୍ରୀହରି ପୁତ୍ରଙ୍କୁ ଘେନିଣ ଆଇଲେ ।
ନର ହୋଇ ଶ୍ରୀକୃଷ୍ଣର ମାୟା କେ ବୁଝିବ
ମାୟା ରଚି ତ୍ରିଭୁବନ ପାଳୁଛି ସେ ଦେବ ।
ଏକା ସେ ଅଟଇ ତିନି ଭୁବନେ କାରଣ
ତ୍ରିଭୁବନ ମଧ୍ୟେ ସେହି ଅଟେ ଧନ୍ୟ ଧନ୍ୟ ।
ରମ୍ୟକ ଦିବାରେ ବଜ୍ରଅଙ୍ଗକୁ ସେ ମାରି
ଜଗତର ବ୍ରହ୍ମାଣ୍ଡେ ଯା ହୃଦେ ଅଛି ପୂରି ।
ଅମାର୍ଗ ମାର୍ଗ ହୁଅଇ ଯାହାର ଦୟାରେ
ସିନ୍ଧୁ ବସୁଧେ ଭଜନ୍ତି ଯାହାର ପଦ୍ମରେ ।
ଚନ୍ଦ୍ର ଦିବାକର ଯାର ଆଜ୍ଞାରେ ଚଳନ୍ତି
ଭୁତ ଭବିଷ୍ୟତ ସବୁ ଜାଣେ ସେ ଶ୍ରୀପତି ।
ମୁଁ ତୁମ୍ଭ ଦାସର ଦାସ ଅଟେ ଜନ୍ମେ ଜନ୍ମେ
ଭକତି ଧରି ହେ ପ୍ରଭୁ ମୋତେ ସୁପ୍ରସନ୍ନେ ।
ଶିରେ ଶୋହଇ ସପତଫଣୀ ଯେ କୁଣ୍ଡଳୀ
ମହାତେଜୋବନ୍ତ ନାଥ ଚରାଚର ବଳୀ ।

ଯାବତ ନଥିଲେ କାଦମ୍ବଶ ସ୍ନାନ କଲ
ତୀର୍ଥବ୍ରତେ ବ୍ରହ୍ମହତ୍ୟା ଦୋଷୁଁ ଉଦ୍ଧରିଲ ।
ଅକାଳେ କାଳେ ମହିମା ତୋର ଅଟେ ସତ୍ୟ
ପ୍ରଳୟ କାରଣ ନାଥ ମହାକାଳକୁ ତ ।
ତୋର ପାଦପଦ୍ମେ ନାଥ ନମାମି ନମାମି
ଉତ୍ପତ୍ତି ସ୍ଥିତି ପ୍ରଳୟ ଉଦ୍ଧାରଣ ସ୍ୱାମୀ ।
କୋଟିଏ ଚନ୍ଦ୍ର ଯାହାର ଏକନଖା ଶୋଭୀ
ଶାରଳା ଦାସେ ଉଦ୍ଧର ହେ ପରମ ଯୋଗୀ ।

---

## ମରୁତ୍ତସେନ ଚରିତ

କହୁଛନ୍ତି ବୈବସ୍ୱତ ମନୁ ହେ ଅଗସ୍ତି
ଏଥିଉତ୍ତାରୁ କି କଥା କହ ବ୍ରହ୍ମସୁତ ।
ଅଗସ୍ତି ବୋଇଲେ ଶୁଣ ହେ କଳିଙ୍କ ରାୟ
କରିବେ ଯେ ଅଶ୍ୱମେଧ ଯାଗ ଧର୍ମରାୟ ।
ଯୁଧିଷ୍ଠି ପୁଛିଲେ ଧୌମ୍ୟ ପୁରୋହିତେ ଗୃହୀଁ
ଅଶ୍ୱମେଧ ଯାଗ ବିଧି କେମନ୍ତ ଅଟଇ ।
କହନ୍ତି ଯେ ପୁରୋହିତ ଶୁଣ ଧର୍ମସୁତ
ଯଦ୍ୟପି ଅଟନ୍ତି ଦେବରାଜ ଜଗନ୍ନାଥ ।
ତେବେସୁଦ୍ଧା ପାପ ଲାଗେ କଲେ ହତ୍ୟା ଦୋଷ
ଅଶ୍ୱମେଧ ଯାଗ କଲେ ସବୁ ହୁଏ ଧ୍ୱଂସ ।
ଧୌମ୍ୟ ପୁରୋହିତ ତାଙ୍କୁ କହିଲେ ଏ ବିଧି
ହତ୍ୟା ବିମୋଚନ ଏହି ଯାଗହିଁ ପ୍ରସିଦ୍ଧି ।
ଏ ଯାଗ ଯେ କରେ ମର୍ତ୍ତ୍ୟେ ଜନ୍ମ ନ ହୁଅଇ
ନିଶ୍ଚୟ ସେ ଲୋକ ବ୍ରହ୍ମଲୋକକୁ ଯେ ପାଇ ।
ଧୌମ୍ୟଙ୍କ ମୁଖରୁ ଏହା ଶୁଣିଣ ଯୁଧିଷ୍ଠି
ବୋଇଲେ ଏ ଯାଗ ଆମ୍ଭେ କରିବା କଷ୍ଟି ।
ପୁରୋହିତଙ୍କ ମୁଖରୁ ଶୁଣି ଦଣ୍ଡଧାରୀ
ମହାମୁନି ବଶିଷ୍ଠଙ୍କୁ ମନରେ ସୁମରି ।
ଉଦୟ ଗିରି କନ୍ଦରେ ଥିଲେ ତପୋବନ୍ତ
ଯୁଧିଷ୍ଠିର ସୁମରନ୍ତେ ଜାଣିଲେ ଭୂପତି ।
ହସ୍ତିନା ଭୁବନେ ଧର୍ମରାଜ ସୁମରନ୍ତି
ଶୁଣ ହୋ ମନୁରାଜନ ଅଗସ୍ତି କହନ୍ତି ।
ହସ୍ତିନା ଭୁବନେ ଆସି ପ୍ରବେଶ ବଶିଷ୍ଠ
ଯୁଧିଷ୍ଠିଦେବ କହନ୍ତି ଆହେ ତପୋନିଷ୍ଠ ।
ବଶିଷ୍ଠଙ୍କୁ ଯୁଧିଷ୍ଠିର ନାନାପୂଜା କଲେ
ଆସନାଦ ଦେଇ ପୁଣି ବିନୟେ କହିଲେ ।
ମୋହର ବିନୟ ବାଣୀ ଶୁଣ ମୁନିବର
ଅଶ୍ୱମେଧ କରିବଇଁ ଇଛନ୍ତି ବିଚାର ।
ବଶିଷ୍ଠ ବୋଇଲେ ସାଧୁ କଲ ସର୍ବଧର୍ମ
ଅଶ୍ୱମେଧ ଯାଗବିଧି ଅଟଇ ଶ୍ରେଷ୍ଠକର୍ମ ।
ଅଶ୍ୱମେଧ ଯାଗକରି ପାରଇ ଯେ ଶେଷ
ଅବଶ୍ୟ ସେ ବ୍ରହ୍ମଲୋକେ ହୁଅଇ ପ୍ରବେଶ ।
ତାର କୁଳେ ଯେତେ ଲୋକ ହୋଇଥାନ୍ତି ସ୍ୱାମୀ
ବ୍ରାହ୍ମଣ ଜଦା ଚଣ୍ଡାଳ ହେବ ସ୍ୱର୍ଗଗାମୀ ।
ପୁତ୍ର କନ୍ୟା ଭାରିଯା ଯେ କୁଟୁମ୍ବ ସଙ୍ଗରେ
ଦିବ୍ୟରୂପ ହୋଇ ସର୍ବେ ବସନ୍ତି ସ୍ୱର୍ଗରେ ।
ଯାଗ ମହିମା ଶୁଣିଣ ଯୁଧିଷ୍ଠି କହନ୍ତି
ଏହା ନ କରି କି ଧର୍ମ କରିଛି ମୁଁ ଯତି ।
ତୁମ୍ଭଙ୍କୁ ଆଦ୍ୟରୁ ବେଦ କଲି ମୁଁ ବରଣ
କରିବ ଯାଗର ଅଟେ ଯେ ବିଧି ବିଧାନ ।
ରାଜାର ବଚନ ଶୁଣି ବଶିଷ୍ଠ ବୋଲନ୍ତି
କହିବୁଁ ଯେ ଯାଗ କଥା ଶୁଣ ନରପତି ।
ଏହି ବଂଶେ ଶ୍ୱେତ ନାମେ ଥିଲେ ନରପତି
ଦେବଯାଗ କରିବାକୁ ବଳିଲା ତା ମତି ।
ମୋତେ ସେ ବରିଲା ବସ୍ତ୍ର ଗର୍ଭ ସତ୍ୟଯୁଗେ
ମୁହିଁ ଯାଜନକ ହେଲି ଯାଇ ତାର ସଙ୍ଗେ ।
ମୁଁ ବୋଇଲି କିପାଁ ମୋତେ ବରିଲୁ ତୁ ଯାଗେ
ଅଟନ୍ତି ଘୃତ ପ୍ରୋକ୍ଷଣୀ ମୋର ଗୃହମେଧେ ।
ମୁଁ ହୋମ କଲେ ଅଣ୍ଟାଇ ପାରିବୁ କି ଘୃତ
ଶୁଣି ଏହା ସନମତ କଲା ରାଜା ଶ୍ୱେତ ।
ସନମତ କରି ରାଜା କଲାକ ଭୂରିତ
ଘୃତ ସମୁଦ୍ରକୁ ସେବା କରିଲା ବହୁତ ।
ପଞ୍ଚଦଶ ବରଷ ସେ ତାକୁ ସେବା କଲା
ମନାଇ ଘୃତସମୁଦ୍ର ସେ ଘୃତ ଆଣିଲା ।
ଚଉବଂଶ ବର୍ଷ ଯାଏ ଯଜ୍ଞେ ନରମଣି
ମୁଷଳ ଧାରରେ ଘୃତ ବର୍ଷାଇଲା ଆଣି ।
ଲୋଭେ ବୈଶ୍ୱାନର ତହିଁ ଭକ୍ଷି ସର୍ବଘୃତ
ତାଙ୍କ ଦେହେ ଲହୁବୁହୁ ବ୍ୟାଧି ହେଲା ଜାତ
ବୋଲନ୍ତି ବଶିଷ୍ଠମୁନି ଶୁଣ ହୋ ଯୁଧିଷ୍ଠି
ଅଗ୍ନି ଅବନେ ଆହାରହୀନ ହେଲା ସୃଷ୍ଟି ।
ଅଗ୍ନି ବହୁନେ ସମସ୍ତେ ହେଲେ ଲହୁବୁହୁ
ଅଶକତ ହେଲେ ଜାତ ନ ହୋଇଲା ବନ୍ଧୁ ।

ଅଗ୍ନି ଇନ୍ଦ୍ର ଦେବତାଙ୍କୁ ମାଗିଲେ ଔଷଧି
ଇନ୍ଦ୍ର ନ ଦେବାରୁ ତାର ଭଲ ନୋହେ ବ୍ୟାଧି
ଘଇ ତୋହର ଅର୍ଜୁନ ଇନ୍ଦ୍ରେ ହୋଇ ବାଧ
ଖାଣ୍ଡବ ବନ ଖଣ୍ଡିଲ ତାହାର ସେ ବ୍ୟାଧି ।
ଯଜ୍ଞେ ଅଗ୍ନିକୁ ଆହାର ଦେଲେ ଧର୍ମରାୟ
ଅଶ୍ୱମେଧ ଫଳପ୍ରାପ୍ତି ହୁଅଇ ନଷ୍ଟସ୍ତ ।
ପୃଥ୍ୱୀର ସମାନ ଏଥେ ଲଗିଛନ୍ତି ଦଉ
ନ ସମ୍ପୁଣ ଯାଗେ କପାଁ ପଣ ଧର୍ମସୁତ ।
ରାଜସୂୟ ଯଜ୍ଞ ତୁମ୍ଭେ କଲ ଯେତେବେଳେ
ଭଣ୍ଡାର ଘରୁଆ ଦୁର୍ଯ୍ୟୋଧନ ହୋଇଥିଲେ ।
ଶଙ୍ଖନିଧି ପଦ୍ମନିଧି ତାର କରେ ଥିଲା
ତେଣୁ ଯେତେ ଖର୍ଚ୍ଚ ହେଲେ କେତେଭେ ସରିଲା
ବଶିଷ୍ଠଙ୍କୁ ଯୁଧିଷ୍ଠିର ଗୃହ ଦେଖାଇଲେ
ନ ଅଣ୍ଟ ବ ଏ ଧନ ଯେ ବଶିଷ୍ଠ ବୋଇଲେ ।
ମୋର ସଙ୍ଗେ ଆସ ଯିବା କାଞ୍ଚି ନଗ୍ରବନ
ଦେବଇଁ ମୁହିଁ ସେଠାରେ ଅଛି ଯେତେ ଧନ ।
ବଶିଷ୍ଠଙ୍କ ସହ ଭୀମ ଯୁଧିଷ୍ଠିର ଅର୍ଜୁନ
ଦିନଶେଷ ସମୟରେ କଲେକ ଗମନ ।
ବେଗେ ଯାଇ କାଞ୍ଚନଗ୍ରେ ହୋଇଲେ ପ୍ରବେଶ
କହଇ ଯେ ତୁଙ୍ଗଭଦ୍ରା କାଞ୍ଚନଗ୍ର ପାଶ ।
କହିଭୂଆ ନାମେ ଅଛି ପର୍ବତ ଗୋଟାଏ
ଶତେ ଯୋଜନ ନଗମ ନଦୀ କହିଯାଏ ।
ସମସ୍ତେ ଯାଇ ପ୍ରବେଶ ହୋଇଲେ ସେଠାରେ
ରହିଲେ ପାପୁଚକଣ୍ଠ ବୃକ୍ଷ ନିକଟରେ ।
ବଶିଷ୍ଠ ବୋଇଲେ ତୁହେ ଶୁଣ ବୃକୋଦର
ଏ ପର୍ବତକୁ ଉପାଡ଼ ଘେନି ଗଦା ତୋର ।
ଶୁଣି ବୃକୋଦର ବେଗେ ଗଦାବର ତୋଳି
ଭାଙ୍ଗନ୍ତେ ସେ ଗିରିବର ପଡ଼ିଲାକ ତଳି ।
ଫଟୁଆର ଭିତରଟି ଯେଉଁ ଘର ଖୋଳ
ସେହି ଖୋଳର ଉତ୍ସର୍ଗ ଅଟେ ନବତଳ ।
ତଳକୁ ଗର୍ଭର ତାର ଉଣେଇଶ ବାଡ଼
ଅଠାଇଶ ତାଳସା ଏ ଧନ ଅଛି ପୁର ।
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଯୁଧିଷ୍ଠିର ରାଜନ
ବଶିଷ୍ଠ ବୋଇଲେ ଯାଗ କର ନେଇ ଧନ ।
ଭୀମ ଅର୍ଜୁନ ଦେଖିଣ ମନେ ବିଚାରିଲେ
ଏତେ ଧନ କାହାର ବା ରହିଛି ଏଠାରେ ।

ଯୁଧିଷ୍ଠିର ବୋଇଲେ ଯାଗ ମୋର ଧର୍ମ ଅର୍ଥେ
ପରଧନ ଏହା ମୁହିଁ ନେବଇଁ କେମନ୍ତେ ।
ବୋଲନ୍ତି ବଶିଷ୍ଠ ଶୁଣ ଧର୍ମ ନରପତେ
ପରଧନ ଆମ୍ଭେ କପାଁ ଦେଖାଇବୁ ତୋତେ
ତୋହର ଉପର ବଂଶେ ଚନ୍ଦ୍ର ଯେ ଦେବତା
ତାର ଚନ୍ଦ୍ରଁ ଜନ୍ମିଲା ସୋମ ନାମେ ସୁତା
ସୋମର ନନ୍ଦନ ବୁଧ ନାମେ ନରପତି
ପୁରୂରବା ନାମେ ଜାଣ ତାହାର ସନ୍ତତି ।
ପୁରୂରବାର ନନ୍ଦନ ଆୟୁ ମହାରାଜା
ନହୁଷ ବୋଲି ହୋଇଲା ତାହାର ତନୁଜା ।
ନହୁଷର ନନ୍ଦନ ଯେ ହୋଇଲେ ଯଯାତି
ମାନଧାତା ନାମେ ନୃପ ତାହାର ସନ୍ତତି ।
ସାତଲକ୍ଷ ସତାଶୋଇ ସହସ୍ର ବରଷ
ସତ୍ୟଯୁଗେ ଭୋଗିଲେ ସେ ହୋଇ ନରଈଶ
ତ୍ରେତୟାରୁ ତେର ଲକ୍ଷ ବତିଶ ହଜାର
ସେ ମାନଧାତା ଭୋଗିଲେ ହୋଇ ନରେଶ୍ୱର
ତାଙ୍କ ପାଞ୍ଚଶତ ପଞ୍ଚାଳିଶ ଅଙ୍କରେ
ଉଦ୍ଧରିସ ବୋଲିଣ ଯେ ଏକ ସମ୍ବତ୍ସରେ ।
କାର୍ତ୍ତିକ କୃଷ୍ଣପକ୍ଷ ଯେ ଚତୁର୍ଥୀର ତିଥି
ରୋହିଣୀ ନକ୍ଷତ୍ର ବାର ଅଟେ ବୃହସ୍ପତି ।
ପୁଣ୍ୟତୋୟା କୂଳେ ସେ ମରୁତସେନ ନୃପ
ଯାଗ କରିବାକୁ ମନେ କଲେ ସଂକଳପ
ଯାଜନକେ ଆମ୍ଭଙ୍କୁ ସେ କରିଲେ ବରଣ
ମୁଁ ବୋଇଲି ବିଶ୍ୱାମିତ୍ର କରୁ ସମାଧାନ
ସକାଳେ ଅକାମେ ବ୍ରହ୍ମପଦ ସେ ଇଛନ୍ତି
ଯାଗନକେ ବରିଲେ ସେ ଆସିବେ ଝଟତି ।
ନାରଦ କହିଲେ ଯାଇ ପିତାମହ ଆଗେ
ବିଶ୍ୱାମିତ୍ର ତପେ ଚଳିଯାଉଛନ୍ତି ବେଗେ ।
ଉତ୍ତର ପର୍ବତେ ବସିଛନ୍ତି ବୃହସ୍ପତି
ତାହାଙ୍କୁ ବରଣ କର ଉତ୍ତମ ଅଟନ୍ତି ।
ଆମ୍ଭ ବଚନରେ ଗଲା ସେ ମରୁତ ରାୟେ
ଦେଖିଲାକ ବୃହସ୍ପତି ବସିଛନ୍ତି ଲୟେ ।
ନୃପତି ସମ୍ମୁଖୁ ଯାଇ ପ୍ରଣାମ କରନ୍ତି
ସୋମବଂଶୀ ରଜା ଦେଖି ଶୁଭ ସେ ବାଞ୍ଛନ୍ତି ।
ମରୁତ ସେନ ବୋଇଲା ଶୁଣ ବିଶ୍ୱାମିତ୍ରେ
ଯାଗ କରଣେ ଇଛନ୍ତି ଆଜ୍ଞା ଦିଅ ମୋତେ ।

ପୁଣି ନୃପତି ବୋଇଲା ଅତି ଅନୁରାଗେ
ତୁମ୍ଭେ ଯାଗନକ ଗୁରୁ ହୁଅ ମୋର ଯାଗେ ।
ବୃହସ୍ପତି ବୋଇଲେ ତୁ ମର୍ତ୍ତ୍ୟ ଜାତି ହୋଇ
ଆମ୍ଭଙ୍କୁ ବରଣ କରୁ ଜ୍ଞାନ ତୋର ନାହିଁ ।
ନର ପାମର ସିନା ରେ ତୁମ୍ଭଙ୍କୁହିଁ ଜାଣି
କିସ ଯାଗ ତୋର ତୁହି କରିବୁ ଯେ ପୁଣି ।
ବହୁତ ଝିଙ୍ଗାସ କଲେ ତାଙ୍କୁ ବୃହସ୍ପତି
ଲଜ୍ଜା ପାଇଲା ସେ ସୋମବଂଶ ନରପତି ।
ଲକେ ଚଟେଣ ହ୍ରମ୍ଭରୁ ନ ପାଇ କାଢ଼ି
ବୃହସ୍ପତି ଅନ୍ତର୍ଦ୍ଧାନେ ଗଲେ ତହିଁ ଛାଡ଼ି ।
ଦିଗମ୍ବର ହୋଇ ରାଜା ଭ୍ରମଇ ବିଷାଦେ
ଏସନ ସମୟେ ଯାଇ ମିଳିଲେ ନାରଦେ ।
ବିଷାଦେ ସମସ୍ୟା ଦେଇ ନ ପାରଇ ରାୟେ
ଡକଲେ ବନସ୍ତ୍ରୀ ହେଲା ନାରଦଙ୍କ ପାସେ ।
କିମର୍ଥେ ମରୁତସେନ ତୋହର ବିଷାଦ
ପ୍ରଜା ମାନଙ୍କର ତୁ କି କଲୁ ଅପରାଧ ।
ପ୍ରଜାଙ୍କୁ ଅବଧି କଲେ ରାଜା ପାଏ କଷ୍ଟ
ଆପେ ପୁଣି ନାଶଯାଇ ଉପୁଜେ ଅନିଷ୍ଟ ।
ଯାଗ ନ କଲୁ କି ଶସ୍ୟହୀନ ମହୀତଳ
ମେଘେ ନ ବର୍ଷିଲେ ପ୍ରଜା ହୁଅନ୍ତି ବିକଳ ।
ମରୁତସେନ ବୋଇଲା ଶୁଣିମା ନାରଦେ
ଅଶ୍ୱମେଧ ଯାଗ ଅନୁକୂଳ କଲି ହାଦେ ।
ବରଣ କଲି ବଶିଷ୍ଠ ଋଷିଙ୍କି ମୁଁ ଆଗେ
ବିଶ୍ୱାମିତ୍ରଙ୍କ ଝଗଡ଼େ ଗଲେ ସେହି ରାଗେ ।
ବୃହସ୍ପତିଙ୍କି କହିଲେ ବରଣ ନିମନ୍ତେ
ଅନେକ ଝିଙ୍ଗାସି ପୁଣି ବୋଇଲେ ସେ ମୋତେ
ନାରଦ ବୋଇଲେ ଦୁଃଖ ନ କର ତୁ ଚିତ୍ତେ
ଆମ୍ଭେତୋଯାଗରେଋଷି ଜଣେଦେବା ତୋତେ
ମରୁତ ବୋଇଲେ ଯେବେ ଆଜ୍ଞା ଦେବୁ ଋଷି
ମୁହିଁ ନ ବରିବି କେବେ ବୃହସ୍ପତି ବଂଶୀ ।
ମୁନି ବୋଇଲେ ଜଣେହେଁ ବରଣ ତୁ କର
ତା ନୋହିଲେ ଯାଗ ନଷ୍ଟ ହୋଇବ ତୋହର
ଏମନ୍ତ କଥା ରେ ରାୟେ ନ ବୋଲ ତୁ କିଛି
ବୃହସ୍ପତିଙ୍କ ଉତ୍ତମ ପୁତ୍ରେକ ଯେ ଅଛି ।
ବଡ଼ଇ ପଣ୍ଡିତ ନାମ ତାହାଙ୍କର କତ
ତାହାଙ୍କୁ ବରିଲେ କିଛି ନାହିଁ ଭୟ ବାତ ।

ପାଠ ପଢ଼ାଇଲେ ତାଙ୍କୁ ଯହୁଁ ବୃହସ୍ପତି
ଅଭକ୍ଷ୍ୟ ବାଳୁତ ସେଣୁ ଛନଛଳ ମତି ।
ତୁହି ଏବେ ଏହିକ୍ଷଣି ଚଳ ଯା ତୁରତେ
ଏତେବେଳେ ବସିଛନ୍ତି ସେ ମେରୁ ପର୍ବତେ ।
ଶୀଘ୍ରରେ ତୁ ଘେନସିବୁ ତୋର ଅସିପତ୍ର
ତୋତେ ଦେଖି ପଳାଇବ ସେ ବହୁତ ପଥ ।
ନଗ୍ନ ହୋଇଲେ ତୋତେ କରିବ ସେକୋପ
କିପାଇଁ ଅଇଲୁ ବୋଲି ଦେବ ଅଭିଶାପ ।
ତୋତେ ସେ ଦେଖିଲା ମାତ୍ରେ ପଳାଇବ ଡରେ
ଏହନ ତୁ ମୂର୍ତ୍ତିମନ୍ତ ହୋଇବୁ ହ୍ରମ୍ଭରେ ।
ଥୋକାଏ ଦୂରେ ସେ ତୋତେସ୍ପର୍ଶିବ ଲେଉଟି
ଝୁଣ୍ଟି କାଟେ ପଡ଼ିବ ସେ ବାଳ ପୁଅ ଗୋଟି
ଖଡ୍ଗ ତୁଲଇ ପ୍ରବେଶ ହେବୁ ତା ଆଗର
ପ୍ରତିଉତ୍ତର ଦେବ ସେ ହୋଇଣ କାତର ।
ପ୍ରଣମିତ ହୋଇବୁ ତୁ ଯେତେବେଳେ ତାଙ୍କୁ
ବରଣ କରିବୁ ତୁହି ତୋହର ଯାଗକୁ ।
କହିଣ ନାରଦ ମୁନି ଗଲେ ଅନ୍ତର୍ଦ୍ଧାନ
ମରୁତସେନ ରାଜନ ଗଲା ସେହିସ୍ଥାନେ ।
ଆକାଶ ଗଙ୍ଗାରେ ମୁନି ସନ୍ଧ୍ୟା କରୁଥିଲେ
ନୃପତିର ମୂର୍ତ୍ତି ଦେଖି ଭୟେ ପଳାଇଲେ ।
କେଶ ମୁକୁଳ ବସନ ପଡ଼ଇ ଯେ ଖସି
ପଳାଇଲା ବାପ ବାପ ବୋଲି ବାଳଶିଷି ।
ଦଶ ଶତେ ଯୋଜନ ଯେ ଗୁହିଁଲା ଲେଉଟି
ଲେଉଟି ଗୁହାଁନ୍ତେ ତଳେ ପଡ଼ିଗଲା ଝୁଣ୍ଟି ।
ଖଡ୍ଗ ଘେନି ଗମଇ ପଛେ ମହାରାୟେ
ମୂର୍ତ୍ତିଧରି ଆହୋଶିଲା ବହ୍ନ ତେଜ ପ୍ରାୟେ ।
ଦନ୍ତେ ତୃଣ ସେ ଘେନି ବୋଲେ ରଖ ରଖ
ତୁ ମହାତମା ନ ମାର ମୁଁ ଅଟେ ନିରେଖ ।
ସଙ୍କି ଧେ ପାଇ ଗୁହିଁଲା ତାହାର ବଦନ
କତ କୁମର ବୋଇଲା ତୁ ମରୁତସେନ ।
ବିଶ୍ୱାମିତ୍ର ଅଭିଶାପେ କଳ୍ମଷ ରାଜନ
ରାକ୍ଷସ ହୋଇ ଭକ୍ଷିଲା ବଶିଷ୍ଠ ନନ୍ଦନ ।
ତେଣୁ ଦେଖି ପଳାଇଲି ତାହା ପର ବୁଝି
ଭୟେ ଲୁଚିଅଛି ଏବେ ମେରୁହୋଟ ମଝି ।
ଶୁଣି ମରୁତସେନ ଯେ କଲା ପ୍ରଣିପାତ
କରିବ ମୁଁ ଅଶ୍ୱମେଧ ଯାଗ ତପୋବନ୍ତ ।

ଆସିଲି ଯାଞ୍ଚି କପଟେ ତୁମ୍ଭଙ୍କୁ ବଞ୍ଚି
ଅନେକ ଦୁଃଖ ପାଇଲି ତୁମ୍ଭଙ୍କୁ ସେବିତ ।
ଯତି ବୋଇଲେ ବରଣ ଶୋଚିଲି ମୁଁ ରାଜା
ଆମ୍ଭ ସରିକ ତୋହର ଯୋଗାଡ଼ କର ଯା ।
ସର୍ବ ସମ୍ବାଦ କହିବୁ ମୋହର ଅଗ୍ରତେ
ମୁହିଁ ଥିବ ମଣିଚୂଡ଼ ନାମେ ପର୍ବତେ ।
ପ୍ରଥା ତଥିରେ ବରଣ କର ସୋମବଂଶୀ
ଏହା କହି ବରଣ ସେ ନେଲେ ବାଳଶିଶ ।
ବଳନ୍ତି ମରୁତସେନ ଯାଇ ଇନ୍ଦ୍ରପ୍ରସ୍ଥେ
କରଇ ଯେ ଯୋଗ ଧୌମ୍ୟ ପୁରୋହିତମତେ ।
ଚଣ୍ଡବଳରଥ ରାଜା ସବୁ ସମ୍ପତିଲ
ଜଟରଷି ସନ୍ନିଧିରେ ପ୍ରବେଶ ହୋଇଲ ।
ଅନେକ ଦୂରରେ ଆଇ ଡାକନ୍ତଏ ନୃପ
ମୁଁ ମରୁତସେନ ମୋତେ ନ କରିବା କୋପ ।
ଗହ ଗହ ଶବଦରେ ଶୁଭିଲାକ ବାଣୀ
ଆସନ କମ୍ପନ୍ତେ ଜଟ ଧ୍ୟାନେ ତାହା ଜାଣି ।
କ୍ଷଣକେ ବାଳୁତ ପୁଣି କ୍ଷଣକେ ସେ ଜ୍ଞାତା
ମନ କଲେ ଦୃଶ୍ୟ ହୁଏ ବ୍ରହ୍ମାଣ୍ଡ ବାରତା ।
ଏକାଳେ ମରୁତସେନ ଚରଣେ ପ୍ରଣମି
ଇନ୍ଦ୍ରପ୍ରସ୍ଥକୁ ବଳନ୍ତେ କର ଦେବ ସ୍ୱାମି ।
ରାଜାର ବଚନ ଶୁଣି ବୋଇଲେ ସେ ଜଟ
ତୁହି ଆଗ ହୋଇଥାଅ ମୁଁ ହେଉଛି ପଛ ।
ପଥ ଅତି ଦୁର୍ଗମ ତୁ ଆଗେ ଚଳ ବାବୁ
ଇନ୍ଦ୍ରପ୍ରସ୍ଥେ ଯାଅ ତହିଁ ଆମ୍ଭଙ୍କୁ ଦେଖିବୁ ।
ଏତେ ବୋଲି ଜଟରଷି ଅନ୍ତର୍ଦ୍ଧାନ ହେଲେ
ମନଯାନ ଚଢ଼ି ଯାଗେ ପ୍ରବେଶ ହୋଇଲେ ।
ମରୁତସେନ ପ୍ରବେଶ ହୋଇ ସ୍ୱରାଜ୍ୟରେ
ଜଟଙ୍କୁ ଦେଖିଲା ବସିଅଛନ୍ତି ସେଠାରେ ।
ଆଶ୍ଚର୍ଯ୍ୟ ହୋଇଣ ପଚାରଇ ଦଣ୍ଡଧାରୀ
ଆଗେ କପରି ଅଇଲ ଆହେ ତପସ୍ୱୀ ।
ସେ ବୋଲେ ମୋର ମହିମା ନ ଜାଣୁ ମରୁତ
ମନ ଯଥା ଗମେ ମୋର ଗମନ ସେ ମତ ।
ତହୁଁ ଦେଖାଇଲା ଯାଗସମ୍ପଦ ନରେନ୍ଦ୍ର
ଦେଖି ଉପହାସ କଲା ମୁନିକୁଳଚନ୍ଦ୍ର ।
ଭିଆଇଅଛୁ ତ ବଡ଼ ସମ୍ଭାର ନୃପତି
ଆଜ ଯାଗକୁ ଉତ୍ତମ ଜାଣ ଏ ଯୁକତି ।

ଅଶ୍ୱମେଧଯାଗ ରାଜା ତୁହେ ଏଣେ କର
ଶୁଣି କରଯୋଡ଼ ପୁଣି କହେ ଦଣ୍ଡଧାରୀ ।
ଜଟ ବୋଇଲେ ଯେବେ ତୁ ବା ବୁ ଆମ୍ଭଙ୍କୁ
ଆସ ହୋ ମରୁତ ଧନ ଦେବାକୁ ତୁମ୍ଭଙ୍କୁ ।
ବଦନ୍ତି ବଶିଷ୍ଠମୁନି ଶୁଣ ହୋ ଯୁଧିଷ୍ଠି
ଜଟ କଥାରେ ମରୁତସେନ ବେଗେ ଉଠି ।
ମହାଅରଣ୍ୟେ ପ୍ରବେଶ ହେଲେ ଦଣ୍ଡଧାରୀ
ସୌରାଷ୍ଟ୍ରବନ ସହସ୍ର ଯୋଜନ ଯେ ଗ୍ୱର ।
ବାରଣି ନଗର ପାଶେ ରଉଦ୍ର ପର୍ବତ
ଜଟ ବୋଲେ ରାଜା ଏଥେ ହୁଅ ତୁ ଗୁପତ ।
ଅନ୍ୟ କାହାରିକୁ ତୁହି ନ ହୋଇବୁ ଦୃଶ୍ୟ
ଏଥେ ଥାଏ ମହାରୁଦ୍ର ନାମରେ ରାକ୍ଷସ ।
ମଣିଭଦ୍ର ବୋଲି ପୁଣି ରାକ୍ଷସେକ ଅଛି
ବ୍ରାହ୍ମଣ କବା ଚଣ୍ଡାଳ ସବୁ ଯାଏ ଭକ୍ଷି ।
ରୁଦ୍ର ସତ୍ୟଯୁଗେ କାଶୀବାସୀ ସେବା କଲା
ସତରିଲକ୍ଷ ବରଷ ଲୁହା ସେ ଭକ୍ଷିଲା ।
ଶିବେ ତାକୁ ବର ଦେଲେ ଦେବ ସଦାନନ୍ଦ
ଇଶ୍ୱରଙ୍କୁ ମାଗିଲା ସେ ମହେଶ୍ୱର ପଦ ।
କ୍ରୋଧେ ତାକୁ ବର ଦେଲେ ଦେବ ଗୁଣନିଧି
ମୋର ପଦ ନେଇ ଭୁଞ୍ଜ ଯେ ଅଛି ବାରିଧି ।
ହର ବର ପାଇ ଦୈତ୍ୟ ସିନ୍ଧୁକୁ ଗମିଲା
ବହୁଧନ ଆଣି ତହୁଁ ଭଣ୍ଡାରେ ରଖିଲା ।
ତୁ ଏଥି ମରୁତରାଜା ରହିଥାଅ ଦଣ୍ଡେ
ଆମ୍ଭେ ଏଥୁ ଯାଇ ନେଇ ଆସୁ ରତ୍ନଖଣ୍ଡେ ।
ଏହି ପର୍ବତ ଉପରେ ଗୁପ୍ତେ ରହିଥିବୁ
ଆମ୍ଭର ଡାକ ଶୁଣିଲେ ବଦନ କୁ ଯିବୁ ।
ଏତେ କହି ଜଟ ଯହୁଁ ବେଗେ ଚଳିଗଲେ
ରଉଦ୍ର ପର୍ବତେ ଯାଇ ପ୍ରବେଶ ହୋଇଲେ ।
ନଦ୍ରାରେ ସେ ମଣିଭଦ୍ର ନ ଜାଣଇ କିଛି
ଉତ୍ସ ଥୋକାଏ ଦୂରରେ ଜଟରଷି ଅଛି ।
ଖବସବୁ ଆତଯାତ ହେଲେ ଯେତେବେଳେ
ଚଅଇଁ ଉଠି ବସିଲା ଅସୁର ଚଣ୍ଡାଳେ ।
ଦଇତ୍ୟ ଜିହ୍ୱାରୁ ମାର ସ୍ରବଇକ ଯହୁଁ
ଚଣ୍ଡାଳ ଅସୁର ବେଗେ ଚଅଁଇଲା ତହୁଁ ।
ବୋଇଲା ଅହ... ଭଲ କଲୁ ଆରେ ଦ୍ୱିଜ
ତନେଦନ ... ର ନାହିଁ ନରଲୋକ୍ୟ ।

ତୋର ମାଂସ ଭକ୍ଷିଲେ ମୁଁ ହୋଇବ ସେ ସୁସ୍ଥ
ଆସ ଆସ ମହାତ୍ମା ତୁ ଅଜ୍ଞାନ ବାଳୁତ ।
କଚ ବୋଇଲାକ ମୋତେ ଭୁଞ୍ଜି କ ନା ବାବୁ
ପଦାର୍ଥେକ ମାଗିବଇଁ ମୋତେ ଦାନ ଦେବୁ ।
ମଣିଭଦ୍ର ବୋଇଲାକ ଯେଣେ ତୋର କାର୍ଯ୍ୟ
ମୁହିଁ ତାହା ନିର୍ଣ୍ଣ କରି ଦେବ ଆହୋ ଦ୍ୱିଜ ।
ଋଷି ବୋଇଲେ ମରୁତସେନ ନୃପମଣି
ଇନ୍ଦ୍ରପ୍ରସ୍ଥେ ଅଶ୍ୱମେଧ କରିବ ସେ ପୁଣି ।
ମୋତେ ସେ କହିଛି ଆଜ ଯାଗନିକପଣେ
ଧନ ନ ଅଣ୍ଟିଲା ଆସିଅଛି ସେ କାରଣେ ।
ମଣିଭଦ୍ର ବୋଇଲା ମୁଁ ଅଟଇ ରାକ୍ଷସ
ମୋହର ନିଜ ଆହାର ଅଟେ ମଧୁ ମାଂସ ।
ନିଃଶେଷେ ବ୍ରାହ୍ମଣ ତୁମ୍ଭ ବେଦମନ୍ତ୍ରେ ସିଦ୍ଧି
ବ୍ରାହ୍ମଣ ମାଂସ ଭକ୍ଷିଲେ ନ ରହଇ ବ୍ୟାଧି ।
ଯତନେ ଲୋଡ଼ୁ ଆମ୍ଭେ ଯେ ମଧୁମାଂସ ଭକ୍ଷୁ
ଏଡ଼େ ପ୍ରମାଦେ ପଡ଼ିଲୁ କିପାଁ ଦେଖୁ ଦେଖୁ ।
କଚ ବୋଇଲା ମୁଁ ଭୂତ ଭବିଷ୍ୟତ ଜ୍ଞାତା
ମୁଁ ଜାଣଇ ତୋର ସପ୍ତପୁରୁଷ ବାରତା ।
ପର ଉପକାରେ ମରଣକୁ ନ ଡରଇ
ସଦା ପରଦୁଃଖେ ମୁହିଁ ଦୁଃଖୀ ଯେ ଅଟଇ ।
ମଣିଭଦ୍ର ବୋଲେ ଯେବେ ଦେବ ତୋତେ ଧନ
କିଏ ଏଥୁ ବହିନେବ ତୁ ମୋର ଭୋଜନ ।
କଚ ବୋଇଲା ମୁଁ ନିଜେ ଧନ ଘେନ ଯିବ
ମରୁତସେନକୁ ଦେଇ ପୁଣି ମୁଁ ଆସିବ ।
ହୃଦରେ ମଣିଭଦ୍ର ଏ ପର ଦୁଃଖେ ଦୁଃଖୀ
ଆସିବ କି ନ ଆସିବ କାରେ ତାହା ଦେଖି ।
ଏତେ ଭାବିଣ ଅସୁର କଚେ ଘେନିଗଲା
ହିରଣ୍ୟ ପର୍ବତେ ବାସନିଧି ଦେଖାଇଲା ।
ଯେତେକ ଅଛଇ ଧନ ନିଅ ହୋ ବ୍ରାହ୍ମଣ
ଧନ ନେଇ ଦେଇଆସ ତୁ ଏଥେ ବହନ ।
ତୁ ଯେବେ ଆସିବୁ ମୋର ଆଜ ହେବ ଗ୍ରାସ
ନ ଆସିଲେ ପଞ୍ଚଆତ୍ମା ମୋର ଉପବାସ ।
ଏକ ନିଧିରେ କନକ ଅଛି ଦଶଲକ୍ଷ
ବାରବୃତ୍ତିପଣେ ତାହା ଭୋଗ କଲା କଚ ।
ମରୁତସେନ ରାଜାର ସନ୍ନିଧେ ମିଳଇ
ଦେଖି ସହସ୍ରେ ପ୍ରଣାମ କରେ ନରସାଇଁ ।

କଚ ବୋଇଲା ତୁ ଧନ ବହି ଘେନଯାଅ
ଶୁଭେ ନିଜ ରାଜ୍ୟେ ଯାଇ ତୁଷ୍ଟି ଲଭିଥାଅ ।
ତହୁଁ ସେ ବନରୁ ଖେଦିଆଣି ମହାରାଜ
ବନ୍ଧନ କରିଲା ରାଜା ଦଶଲକ୍ଷ ଗଜ ।
ଧନଯାକ ଲଦି ସେହି ଗଜଙ୍କ ଉପରେ
ମରୁତସେନ ଚଳିଲା ଆନନ୍ଦ ମନରେ ।
କଚମୁନି ବୋଇଲେ ହୋ ଶୁଣ ମହାରାଜ
ଅଶ୍ୱମେଧ ଯାଗକୁତେ ବେଗ ହୋଇ ଯାଅ ।
ରାଜା ବୋଲେ ଯାଗନିକ ଅଟନ୍ତି ଆପଣ
ମୁଁ ଆଗରେ ଥିଲେ କିସ ହେବ ପ୍ରୟୋଜନ ।
କଚମୁନି ବୋଇଲା ମୁଁ ଯିବ ଆଉ କାହୁଁ
ଏ ଧନ ଆଣିଲି ମୁହିଁ ମଣିଭଦ୍ର ଠହୁଁ ।
ତାହାର ଆଜକୁ ତିନଦିନ ଉପବାସ
ମୋତେ ଭକ୍ଷିଲେ ତାହାର ଆତ୍ମା ହେବ ତୋଷ
ତୋ କାର୍ଯ୍ୟ ନିମନ୍ତେ ବେଗେ ଅଇଲଇଁ ମୁହିଁ
ମୋହର ଯିବାକୁ ସେହି ବାଟ ଥିବ ଚାହିଁ ।
ଏହା ଶୁଣି ବୋଲେ ଏହା କହନ୍ତ କି ଲୋକେ
ତୁମ୍ଭେ କିପାଁ ଯିବ ଦୈତ୍ୟ ମରୁ ତହିଁ ଭୋକେ
ଆପେ ମରି ପରକୁ ଯେ ଦୟାକରିବାର
କେବେ ଏହା ଶୁଣି ନାହିଁ ଆହେ ମୁନିବର ।
କଚ ବୋଇଲା ସେ ମୋତେ କରିଅଛି ଆଶ
ନ ଗଲେ ଧର୍ମ ମୋହର ହୋଇବ ବିନାଶ ।
ଅନେକ ବୈକୁଲ୍ୟ ହୋଇ ବୋଲେ ନୃପମଣି
କଥା ନ ଶୁଣେ ମରୁତସେନ ରାଜା ବାଣୀ ।
ଭୟେ କଣ୍ଠ ଶୁଷ୍କ ରାଜା ନ ପାରିଲା ବୁଲି
ବୋଇଲା ଆଚ୍ଛା ତ ଅଶ୍ୱମେଧ ଯାଗକଲି ।
ଅନେକ ବୁଝାଇ କହେ ରାଜାକୁ ଯେ କଚ
ପାଷାଣର ରେଖା ଜାଣ ମହତଙ୍କ ବାଚ ।
ବାକ୍ୟ ବଦଳିତ ହୁଏ ଯେଉଁ ପୁରୁଷର
କିସ ତାର ଧର୍ମ କିସ ତପସ୍ୟା ତାହାର ।
ଏତେ ବୋଲି କଚ ଯୋଉବନକୁ ଚଳିଲେ
ହିରଣ୍ୟଗର୍ଭ ପର୍ବତେ ସଧୀରେ ଉଠିଲେ ।
ବିଳମ୍ବ ଦେଖି ବୋଇଲା ମୁଁ ବଡ଼ ମୁରୁଖ
ଦେଖୁ ଦେଖୁ ଉପେକ୍ଷିଲି କରିଥିଲା ଭୋଖ ।
ସ୍ଥଳଶ ଯୋଜନଯାଏ କେହି ମୋର ଡରେ
ପଶି ନ ପାରନ୍ତି କାହୁଁ ଆସେ ପୁନର୍ବାରେ ।

ଅପାର ବେଳେ ଅସୁର ସ୍ୱର୍ଗମାନ କାଟି
ନ ଦେଖି ନରାଶ ହୋଇ ବାନ୍ଧେ ପୁଣି ଆଣ୍ଠି
ଏମନ୍ତ ସମୟେ ଯାଇଁ ମିଳିଲେ ସେ ଦ୍ୱିଜ
ତାକୁ ଦେଖି ମଣିଭଦ୍ର ହୋଇଲା ଆଶ୍ଚର୍ଯ୍ୟ ।
ଏକ ଦୃଷ୍ଟିରେ ତାହାକୁ ଚାହିଁ ରହଇ
ବାତୁଳ ହୋଇ ଉତ୍ତମ ସାଧୁ ଏ ଅଟଇ ।
ଗିରିବର ଉପରକୁ ଉଠିବା ସମୟେ
ମଣିଭଦ୍ର ବୋଇଲା କି ଅଇଲ ଏଣ୍ଡା ଏ ।
ମାତା ପିତା ସ୍ତ୍ରୀ ଶିଶୁ ଜନେ ନାହିଁ ତୋର କେହି
କେମନ୍ତେ ମୁରୁଛି ତୋତେଛାଡ଼ି ଦେଲେସେହି
ବ୍ରାହ୍ମଣ ହୋଇ ତୁ ପୁଣି ଏତେଡ଼େ ନିର୍ଭୟ
ଏଠାକୁ ତୁ ଆସିବାକୁ ନ କଲୁ ରେ ଭୟ ।
ଏହା ଶୁଣି ଜତ ବୋଲେ ଜଟୁ ନ ଘସ୍ମର
ଶୀଘ୍ର ମୋତେ ଖାଇ ତୋର ଆତ୍ମା ତୃପ୍ତ କର
ମଣିଭଦ୍ର ବୋଇଲା ମୁଁ କ୍ଷୁଧାରେ ଆତୁର
ବଡ଼ ଦୁର୍ଲ୍ଲଭ ଦେଖିଲି ମହିମା ତୋହର ।
ମନୁଷ୍ୟ ହୋଇ ପୁଣି ତୁ ଏଡ଼େଡ଼କ ମହତ
ତୋତେ ଭକ୍ଷିବାକୁ ମୋର ନ ବଳଇ ମତ ।
ଜତ ବୋଇଲା ତୁ ପୁଣି ହୋଇ ବଡ଼ଭକ୍ଷୀ
ମୋତେ ଛାଡ଼ିଲେ କ୍ଷୁଧାରେ ହେବୁ ବଡ଼ ଦୁଃଖୀ
କ୍ଷୁଧାର୍ଥୀ ଆତ୍ମାକୁ ଯେହୁ କରନ୍ତି ନିରାଶ
କହିଲେ ତ ନ ସରଇ ଏଥି ଯେତେ ଦୋଷ ।
ମଣିଭଦ୍ର ବୋଇଲା ମୁଁ ହୋଇଲି ତୃପତ
ବଚନେ ତୋଷିଲୁ ମୋତେ ତୁ ବାତୁଳ ଯତି
ହୋଇଲଇଁ ତୃପତ ଯେ ତୋତେ କଲଭେଜ୍ୟା
ତୋହର ମନ୍ଦିରକୁ ତୁ ବେଗେ ଚଲ ଯାଯା
ମଣିଭଦ୍ର ଛେଜ୍ୟାକରି ଜତ ତହୁଁ ଆସି
ବାତୁଳ ପ୍ରାୟେ ବୁଲଇ ବନେ ବାଳଶିଷି ।
ପଢ଼ାଇଲେ ଏକ ପୁତ୍ର ବୋଲି ବୃହସ୍ପତି
ତେଣୁ ଅକ୍ଷୟ ବାତୁଳ ବନ୍ଧଳର ମତି ।
ଏଥୁଅନ୍ତେ ଯେ ବଳିଙ୍କ ଦେଶ ମହାରାଜା
ଅଗସ୍ତି ମହାଋଷିଙ୍କ ପାଦ କଲା ପୂଜା ।
ଅନେକ ଧନ ଯେଣ ସେ ମରୁତ ଅଇଲା
ତାହାକୁ ବରଣ କରି ଅଶ୍ୱମେଧ କଲା ।
କହନ୍ତି ଅଗସ୍ତି ଶୁଣ ମନୁ ମହାରାୟ
ଏ ବସ୍ତୁ ପୁରାଣ ଶୁଣି ପାପ କର କ୍ଷୟ ।

ଅନେକ ମହାଋଷିଙ୍କୁ ବରିଲା ମରୁତ
ଜତଙ୍କ ବରଣ ଶୁଣି ହେଲେ ସର୍ବେ ଖ୍ୟାତ ।
ନାରଦ କହିଲେ ବୃହସ୍ପତିଙ୍କର ଆଗେ
ପୁତ୍ରକଷ୍ଟ ହେଲା ତୋତେ ମନ୍ଦକର୍ମ ଯୋଗେ ।
ସୋମବଂଶୀ ଯେ ମରୁତସେନ ମହାରାୟ
ଦେବଯାଗ କରିବାକୁ ବରେ ତୋ ତନୟ ।
ଧନହୀନ ଦେଖି ତୋର ପୁତ୍ର ଜତ ଗଲା
ମଣିଭଦ୍ରା ଦାନବକୁ ଧନ ସେ ମାଗିଲା ।
ସନ୍ତୋଷ ଭୋଜନ ହେଲା ଯେ ତୋହର ବାଳ
ତେଣୁ ଜତକୁ ବନରେ ପଢ଼ିଲା କଟାଳ ।
ଶୁଣି କୋପ କଲେ ଦେବ ଗୁରୁ ବୃହସ୍ପତି
କରେ କନକ ଧଇଲେ ହୋଇ କୋପମୂର୍ତ୍ତି ।
କୋଦଣ୍ଡ ପଣ୍ଡିତ ତହୁଁ ଧାଆନ୍ତ ଗରଜ
ଯାଗଶାଳ ସମ୍ମୁଖରେ ପଳାଇଲେ ରାଜ ।
ଅନେକ ଋଷି ଯେ ସେହି ଯାଗଶାଳେ ଥିଲେ
ବୃହସ୍ପତିଙ୍କର ଭୟେ ସର୍ବେ ପଳାଇଲେ ।
ମରୁତସେନ ନୃପତି ପଳାଇଲା ଡରେ
ଯାଜଣ ଲୁଚିଲେ ସେହି ମନ୍ଦର କନ୍ଦରେ ।
ଶୁଣ ହେ ଯୁଧିଷ୍ଠି ତହିଁ ଗୋଳ ହେଲା ଯହୁଁ
ଭାଙ୍ଗିଲା ଯାଗ ଆରମ୍ଭ ନୋହିଲାକ ତହୁଁ ।
ଶୁଣ ଆହେ ମହାରାଜା କହନ୍ତି ବଶିଷ୍ଠ
ମରୁତସେନ ରାଜାର ଯାଗ ହେଲା ନଷ୍ଟ ।
ଯେତେ ଧନ ସେ ମରୁତି ବହି ଆଣିଥିଲା
ପର୍ବତ ଖୋଳାଇ ଏହା ମଧ୍ୟେ ପୁରାଇଲା ।
ସୁବର୍ଣ୍ଣଖଣ୍ଡ ରନ୍ଧଣା ଯୋଗାଡ଼ ବିହିଁ ଯେତେ
ନଉତି ପଲମ ସରା କଳସୀ ସହିତେ ।
ସୁବର୍ଣ୍ଣର ଥାଳ ଗିନା ଖୋର ଆଦିକରି
ସମସ୍ତ ରଖିଲା ଖୋଳି ପୁଣି ଏହି ଗିରି ।
ମରୁତସେନ ବୋଇଲା ଯେ ମୋହର ବଂଶେ
ଅଶ୍ୱମେଧ କରିବ ସେ ନେବ ଏହା ତୋଷେ
ଅନେକ ପୁରୁଷ ଏବେ ଗଲା ତୋର ବହି
ଅଶ୍ୱମେଧ କରିବାକୁ କେ ରାଜନ ନୋହି ।
ବଶିଷ୍ଠ ବୋଇଲେ ତୁ ଯେ ସଭଧନ ବୋଲୁ
ତଦନ୍ତ କରି ଏଥିର ଅର୍ଥ କହିଦେଲୁ ।
ତୋହର ଉପରବଂଶ ଅର୍ଜିତ ଏ ଧନ
ଏହା ଯେନ ଯାଗ କର ଯୁଧିଷ୍ଠି ରାଜନ ।

ବଶିଷ୍ଠ ବାକ୍ୟେ ଫିଟିଲା ତାଙ୍କ ମନୋଭ୍ରାନ୍ତ
ତହୁଁ ପାଣ୍ଡବମାନେ ଯେ ଧନ ଘେନି ଯାନ୍ତି ।
ଚନ୍ଦ୍ରକୋଟି ଯେ ଘର ପୂର୍ଣ୍ଣ ସୁବର୍ଣ୍ଣକେ
ସୁବର୍ଣ୍ଣ ଯୋଗାଡ଼ମାନ ନେଲେ ଯାଗଶାଳେ
ନମସ୍ତେ କମଳାପତି ନମସ୍ତେ ମୁରାରି
ଯେଉଁ ଦେବ ଏ ସଂସାର ହିତେ ଅବତରି ।
ସେ ଦେବ ପାଦପଙ୍କଜେ ନିତ୍ୟ ମୋର ସେବା
ନମଇଁ ଶାରଳାଦାସ ଗତି ମୁକ୍ତି ଦେବା ।

## ଯୁଧିଷ୍ଠିରଙ୍କର ଅଶ୍ୱମେଧ ଯାଗ

ଶୁଣ ବୈବସ୍ୱତମନୁ ବଦନ୍ତି ଅଗସ୍ତି
ଧନ ନେଇଣ ପାଣ୍ଡବେ ହୋଇଲେ ତୃପତି ।
ଏଥୁଅନ୍ତେ ଯୁଧିଷ୍ଠିର ସେ ଯାଗ ଆରୋପି
ସୁମରନ୍ତେ ବିଜେକଲେ ଆସି ସର୍ବତପୀ ।
ସୁମନ୍ତ ବିଶ୍ୱାମିତ୍ର ବାମଦେବ ମୁନି
ସ୍ୱରଦ୍ୱାରେ ଯାଜକକ ବଶିଷ୍ଠଙ୍କୁ ଘେନି ।
ସକୁର ସହସ୍ର ଶିଷ୍ୟ ଘେନି ମାର୍କଣ୍ଡ
ନିର୍ମାଣ କରନ୍ତି ବସି ସେହି ଯାଗକୁଣ୍ଡ ।
ଦୁର୍ବାସାଙ୍କ ତୁଲେ ନବସହସ୍ର ଯେ ଚେଲା
ଦ୍ୱିଷାସୁ ଈଶ୍ୱର କ ଯେ ଯୋଗେ ବିଜେ କଲା
ବାଇଶି ସହସ୍ର ଶିଷ୍ୟ ଘେନି ମୁଁ ଆସିଲା
ଶୁକମୁନି ଜଇମିନି ଅଛନ୍ତି ଦେଖିଲା ।
ପୌଲସ୍ତି ବକାଷ୍ଟକ ଯେ ଧୌମ୍ୟ ଋଷ୍ୟଶୃଙ୍ଗ
ସମସ୍ତେ ମିଳିଲେ ଶୁଣି ଯୁଧିଷ୍ଠିଙ୍କ ଯାଗ ।
ବ୍ୟାସଙ୍କୁ ଯେ ସୁମରଣା କଲେ ଧର୍ମସୁତ
ଶୀଘ୍ର ଚଳିଲେ ସେ ଥିଲେ ଜଳଦ ପର୍ବତ ।
ଭଲିଲେ ସବୁ କଥାରେ ସୁମରେ ଯୁଧିଷ୍ଠି
ଧାତକାରେ ବିଜେକଲେ ଘେନି ଶିଷ୍ୟଗୋଷ୍ଠି
ଷାଠିଏ ସହସ୍ରଶିଷ୍ୟ ବ୍ୟାସଙ୍କର ତୁଲେ
ଇନ୍ଦ୍ରପ୍ରସ୍ଥ ରାଜ୍ୟେ ଆସି ପ୍ରବେଶ ହୋଇଲେ
ପିତାମହ ଦେଖି ରାଜା ଛାଡ଼ିଲେ ଆସନ
ଶତସହସ୍ର ପ୍ରଣାମ କଲା ପଣ୍ଡୁନାନ ।
ବ୍ୟାସେ ଯୁଧିଷ୍ଠିରଙ୍କି ନେଇ ବସାଇଲେ କୋଳେ
ପଚ୍ଛିଲେ ସେ ସମସ୍ତ ବାରତା କୁଶଳେ ।
ଯୁଧିଷ୍ଠିର ଜଣାଇଲେ ବ୍ୟାସଙ୍କର ପାଦେ
ଅଶ୍ୱମେଧ କରିବି ମୁଁ ତୁମ୍ଭର ପ୍ରସାଦେ ।

ବ୍ୟାସ ବୋଇଲେ ତୋହର ଏ ଉଚିତ କର୍ମ
ଅଶ୍ୱମେଧ ଯାଗୁ ବଳୀ ନାହିଁ ଆନ କର୍ମ ।
ରାଜସୂୟ ଯାଗ କଲୁ ତୋର ପୁଣ୍ୟେକେ
ହତ୍ୟାଦୋଷ ଗଲା ପଣ୍ଡୁ ଗଲେ ସ୍ୱର୍ଗଆଳେ ।
ପୁଣି ବୋଇଲେ ବାବୁ ତୁ ଶୁଣରେ ଯୁଧିଷ୍ଠି
ଅଶ୍ୱିନୀକୁମାରଙ୍କୁ ତୁ ମାଗ ଅଶ୍ୱ ଗୋଟି ।
ଧର୍ମନନ୍ଦନ ଚିନ୍ତିଲେ ଯୋଗାସନ ଧ୍ୟାନେ
ଆସନ କମ୍ପ ହୋଇଲେ ସେ ମଧ୍ୟ ଭୁବନେ ।
ଅଶ୍ୱିନୀକୁମାର ଦେଖି କଲେ ସାଧୁ ସାଧୁ
ତୁ ମହାରାଜା ଯୁଧିଷ୍ଠି ତ୍ରୈଲୋକ୍ୟର ବନ୍ଧୁ ।
ଯାଗଙ୍କ ମଧ୍ୟରେ ଅଶ୍ୱମେଧ ଯାଗ ଶ୍ରେଷ୍ଠ
ଜ୍ଞାନ ମଧ୍ୟେ ଯେସନେ ବ୍ରହ୍ମଜ୍ଞାନହିଁ ଅଟଇ ।
ଏ ଦୁଇରୁ ଶ୍ରେଷ୍ଠ ଆଉ ନାହିଁ ସଇଲୋକ୍ୟେ
ଏକ ଯାଗେ ବସନ୍ତି ତା ସଙ୍ଗେ ବୃନ୍ଦାରକେ
ଧର୍ମ ଅର୍ଥ କାମ ମୋକ୍ଷ ଅଟେ ଚାରି ବିଧ
ଏ ଚାରିହେଁ ଏକ ମହାଯାଗେ ହୋଏ ସିଦ୍ଧ ।
ଯୁଧିଷ୍ଠି ବୋଇଲେ ଶୁଣ ଅଶ୍ୱିନୀକୁମାର
କୁବଳୟ ଅଶ୍ୱ ଦିଅ ଯେ ଅଶ୍ୱରେ ସାର ।
ଏହା ଶୁଣିଣ କୁମାର ପ୍ରସନ୍ନ ହୋଇଲେ
ଅନେକ ବୁଝାଇ ତାଙ୍କୁ କୁବଳୟ ଦେଲେ ।
ଅଶ୍ୱକୁ ଘେନି ପାଣ୍ଡବେ ଆରମ୍ଭିଲେ ଯାଗ
ଅନୁକୂଳ କଲେ ବ୍ୟାସ ବହୁ ଅନୁରାଗ ।
ବ୍ୟାସବୋଇଲେତ୍ରୈଲୋକ୍ୟ ତୁମ୍ଭ ଏକ ଦେବ
ଅନନ୍ତ ବ୍ରହ୍ମାଣ୍ଡେ ତୋତେ କେବଣ ଦୁର୍ଲ୍ଲଭ
ଅଶ୍ୱିନୀକୁମାର ତୋର ଅଟନ୍ତି ଯେ ପିତା
ପରମେଷ୍ଠୀ ଆଦି କଏ ବଚନ ମେଣ୍ଟନ୍ତା ।
ଏ ଅଶ୍ୱ ତୁଲେ କାହାକୁ ବରଗିବୁ ତୁହି
ପ୍ରମାଣିଥିବୁ ଏ ଦେବ ଅଶ୍ୱଗୋଟିକୁହିଁ ।
ପୁଣି ବୋଇଲେ ଚଳାଇ ଯାଉ ଅର୍ଜୁନ
ଆସୁ ରାଜାମାନଙ୍କୁ ସେ ଦେଇ ନିମନ୍ତ୍ରଣ ।
ଏତେବୋଲୁଁ ବ୍ୟାସଦେବ ଅଇଲେ କଣ୍ଠୀ
ଅନେକ ବିଆର ତାଙ୍କୁ କହିଲେ ଯୁଧିଷ୍ଠି ।
ବୁଲିବୁ ତୁ ଅଶ୍ୱ ସଙ୍ଗେ ଘେନି ସୈନ୍ୟଗଣ
ରାଜାଗଣଙ୍କୁ ଯେମନ୍ତେ ନିମନ୍ତ୍ରି ତୁ ଆଣ ।
ସବୁ ନୃପତି ପଡ଼ିଲେ ଆମ୍ଭ ଯୁଦ୍ଧକାଳେ
ବାଳକ ରାଜା ଅଛନ୍ତି ଏ ମର୍ତ୍ତ୍ୟମଣ୍ଡଳେ ।

ଯେମନ୍ତେ ଭକ୍ତି କରନ୍ତି ସେହି ବାଳଗୟ
ଅନ୍ତରେ ତାକୁ କେବଳ ଦେଖାଇବୁ ଭୟ ।
ଯଜ୍ଞାନ୍ତ ଉତ୍ସବମାନ ହୁଏ ଯେତେବେଳେ
ବହୁତ ଲୋକ ଆସନ୍ତି ତହିଁ ଏକମେଳ ।
ତେବେ ସିନା ସହୋଦର ପଣରେ ରହଇ
ଖଣ୍ଡିତ ଯେ କାର୍ଯ୍ୟମାନେ ସମସ୍ତ ସହଇଁ ।
ଯାଅ ଧନଞ୍ଜୟ ହେଉ ତୋତେ ରେ କଲ୍ୟାଣ
ସୁବୁଦ୍ଧି ଦେଲେ ଯେନ କୁ ରାଜାମାନ ଆଣ ।
ଆମ୍ଭେ ରହିଥିବୁ ବାବୁ ଏକାମ୍ରକାନନେ
ସେଠାରେ ଭେଟିବୁ ତୋତେ ବୁଦ୍ଧି ରଖ ମନେ
ଏସନ ସମୟେ ତହିଁ ଦୁର୍ବାସା ମହର୍ଷି
ଅର୍ଜୁନ ସନ୍ନିଧେ ବେଗେ ମିଳିଲେକ ଆସି ।
ପାର୍ଥକୁ ବୋଇଲେ ସ୍ଥୂଳ ଚକ୍ଷୁ କୁ ପାଉନୁ
ଆମ୍ଭେ ପ୍ରଦାନ କରିବୁ ତୋତେ ଦିବ୍ୟଚକ୍ଷୁ ।
ଶତେ ଯୋଜନେ ଥାଇ କୁ ଗୃହିଁଲେ ଫାଲ୍‌ଗୁନ
ଛନ୍ଦତ ହୋଇବ ତୋତେ ସମସ୍ତ ଯେ ପୁଣି ।
ଏହିଠାରୁ ଯାଅ ତୁହି ଏକାମ୍ର କାନନେ
ସେ ସ୍ଥାନରୁ ଫଳ ଏକ ଆଣ ତୁ ବହନେ ।
ଦୂରେ ଥାଇ ଜାଣିବୁ ତୁ ସବୁ ସବ୍ୟସାଚୀ
ଯେ ଫଳ ଇଚ୍ଛା ତାହାକୁ ଆଣିବୁ କୁ ବାଛି ।
ଏହା ଶୁଣି ଅରଜୁନ ଗଲେ ତତକ୍ଷଣି
କାନନରୁ ଏକଗୋଟି ଫଳ ତହୁଁ ଆଣି ।
ଦୁର୍ବାସାଙ୍କ ହସ୍ତେ ସେହି ଫଳଗୋଟି ଦେଲେ
ଦୁର୍ବାସାଋଷି ସେ ଫଳ ଗୋଟିକ ମନ୍ତ୍ରିଲେ ।
ଅର୍ଜୁନ ଧରନ୍ତେ ଫଳ ଶିବଦୃଷ୍ଟି ମିଳି
ଦିବ୍ୟ ଚକ୍ଷୁଦେଲେ ତାଙ୍କୁ ହୋଇ କୁତୂହଳୀ ।
ଅର୍ଜୁନକୁ କହିଲେ କୁ ଶୁଣ ଫାଲ୍‌ଗୁନ
ଶତେ ଯୋଜନ ତୁ ଦେଖି ପାରିବୁ ସଇନ ।
ଏତେ ବୋଲି ତହୁଁ ଚଳିଗଲେ ଶିବଦୃଷ୍ଟି
ଚଳଇ ତହୁଁ ବଶିଷ୍ଠପାର୍ଯ୍ୟର ଯେ ନାଥ ।
ସ୍ଥାଭୁଜେ ଗାଣ୍ଡୀବ ଧନୁ ତୃଣ ଦେଲେ କଷି
ଅନେକ ରଥ ମଣ୍ଡିଲେ ଅଶ୍ୱଦେହେ ଆସି
ବହୁତ ବର୍ଣ୍ଣ ଚାମର ସୁବର୍ଣ୍ଣ ବବର୍ଣ୍ଣ
ତହିଁର ସଙ୍ଗେ ମୁକୁତା ରତ୍ନ ଖଞ୍ଜା ଜାଣ ।
ଏସନକ ଅଶ୍ୱ ମଣ୍ଡି ଚଳାଇଲି ବେଗେ
ଚଳଇ ସେ ଯୁଗଧରଙ୍କ ପବନୁ ଉଦ୍‌ବେଗେ ।

ଶ୍ରାବଣୀ ବର୍ଷର ତଳେ ତଆରନ୍ତି ବ୍ୟାସେ
ଲକ୍ଷେକ ରାଜା ଆଣିବୁ ବସ୍ତ ଧନୁ ମାସେ ।
ମକର ମାସରେ ଶେଷ ହୋଇବ ଆହୁତ
ଯାଅ ଯାଅ ବୋଲି ଆଜ୍ଞା ଦେଲେ ମହାଯତ ।
ଆତେଜ୍ୟ ପ୍ରଦେଶ ପର୍ଣ୍ଣି ମେ ଯହିଁ ସୋମନାଥ
ଦର୍ଶନ କରି ପ୍ରଣାମ କଲେ ତାଙ୍କୁ ପାର୍ଥ ।
ଦେଖିଲି ହେ ଯୋଗେଶ୍ୱର ତୋତେ ପ୍ରଥମରେ
ଜଗତକାରଣ ନାଥ ପଡ଼ି ତୋ ପଦ୍ମରେ ।
ଅଭୟ ନିରାକାର ତୁ ସଂଭବନ୍ତୁ ଯୋଗୀ
କଞ୍ଜଳ ଦୋଷେ ତୁ ଦେଇ ମାୟାଦର୍ପ ଲାଗି ।
ଜଗତ ଯୋବର ଦେବ ତୁ ପରମବନ୍ଧୁ
ସଂସାର ଅନ୍ଧକାରକୁ ତୁହି ଦେବ ଇନ୍ଦୁ ।
ସ୍ୱାମୀ ଚାରି ଯୁଗ ତୋତେ ଏକଇ ନିମିଷ
ବ୍ରହ୍ମା ଦେବତାଙ୍କୁ ହୁଏ ଏକଇ ଦିବସ ।
ନାରାୟଣ ଦେବତାଙ୍କୁ ହୁଏ ଦଣ୍ଡ ଦଶ
ଦେବତା ମାନଙ୍କୁ ହୁଏ ସହସ୍ର ବରଷ ।
ଦେବତାମାନଙ୍କୁ ଯେତେବେଳେ ହୁଏ ଅବେ
ତେତେବେଳେ ହୁଏ ତୋର ନିଃଶ୍ୱାସର ଅର୍ଦ୍ଧେ
ତୋତେ ଯେବେ ସହସ୍ରେକ ବରଷ ହୁଅଇ
ସଚରାଚର ବ୍ରହ୍ମାଣ୍ଡ ପ୍ରଳୟେ ବୁଡ଼ଇ ।
ସ୍ୱାମୀ ଦିବ୍ୟ ରୂପ ଧରୁ ତୁ ସଂସାର ଅର୍ଥେ
ଇଦଂ ଭୂତନାଥ ଚନ୍ଦ୍ରାବାକ୍ୟ ଜପ ତୋତେ
ଏ ତୋହର ତତ୍ତ୍ୱ ବର୍ଣ୍ଣି ନ ଜାଣନ୍ତି କେହି
ତେଣୁ ଅନୁକୂଳ ଗୋଟି ନିର୍ମଳ ତୋ ଦେହି
ମୁଁ ଯାହା ଜାଣଇ ସର୍ବ ସର୍ବ ତୋର ସିଦ୍ଧି
ଅକିଞ୍ଚନ ଜନର ତୁ କରୁଣା ବାରିଧି ।
ସମସ୍ତ ପଥକୁ ଦେଇ ଇଚ୍ଛିଲି ଲେଙ୍ଗଟା ।
ଅଙ୍ଗେ ପାଂଶ ବୋଳି ଶିରେ ବାନ୍ଧିଅଛ ଜଟା ।
ତୁ ଦେବ ପରମାନନ୍ଦ ପୁରୁଷ ଉତ୍ତମା
ଶରଣ ରକ୍ଷଣ ଜନ୍ମେ ଜନ୍ମେ ତୁମ୍ଭ ବାନା ।
ଅଦ୍ଭୁତ ସାଧନା ତବ ନାଥ ତ୍ରିଲୋକରେ
ବଦନ୍ତି ଶାରଳା ଦାସ ଶିବ ଶ୍ରୀପଦ୍ମରେ ।

---

### ଅଶ୍ୱସହିତ ଅର୍ଜୁନର ଚତୁର୍ଦ୍ଦିଗଭ୍ରମଣ ଓ ବଭ୍ରୁବାହନ ସଙ୍ଗେ ଯୁଦ୍ଧ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଅର୍ଜୁନ ବିଜୟ ଦେଖି ବଳେ ପଶୁପତି ।

ବୃଷଭ ବାହନେ ଆସି ମିଳନ୍ତେ କପାଳୀ
ଦେଖି ପାର୍ଥ ତାଙ୍କପାଦେ କଲେ ନତଗ୍ରୀଳ ।
ବୋଇଲେ ଶ୍ରୀ ଯୋଗେଶ୍ୱର ଶୁଣ ହୋ ବାସବ
ଅଶ୍ୱମେଧ ଯାଗ ତୁମ୍ଭେ ଅନ୍ତ ଯେ ଆରମ୍ଭି ।
ଅଶ୍ୱର ଲକ୍ଷଣ ଦେଖି ଅମ୍ଭେ ଜାଣିଥିଲୁଁ
ଅଶ୍ୱମେଧ ଯାଗ ତୁମ୍ଭେ କରୁଛ ଜାଣିଲୁଁ
ପାର୍ଥ ବୋଲଇ ପ୍ରସନ୍ନ ହୁଅ ଆହେ ନାଥ ।
ଯାଅ ବୋଲି ଆଜ୍ଞା ଦେଲେ ଦେବ ବିଶ୍ୱନାଥ
ଅଲେପ ଧର୍ମକୁ ଇଚ୍ଛା କରୁଅଛ ତୁମ୍ଭେ
ସେ ମହାଯାଗକୁ ଭଜେ କରିବାଟି ଆମ୍ଭେ ।
ବନ୍ଧୁ ରାଜା ବଧ କଲ ଏ ଭାରତ ଯୁଦ୍ଧେ
ଧର୍ମ ନାଶ ଯାଇ ବାଳ କୁମରର ବଧେ ।
ଯଦ୍ୟପି ଦୁଷ୍ଟ ହୋଇବ ସେ ବାଳକୁମରେ
ନ ଧରିବ ତାହାଙ୍କର ଦୋଷକୁ ମନରେ ।
ଏତେ ବୋଲି ହର ବେଗେ ଗଲେ ମନ୍ଦରକୁ
ତହୁଁ ଅର୍ଜ୍ଜୁନ ଚଳିଲେ ପଶ୍ଚିମ ଦେଶକୁ ।
ସ୍ୱର୍ଗର ଅଶ୍ୱ ସେ ଭୂତ ଭବିଷ୍ୟଜ୍ଞାତା
ଜାଣଇ ଅନନ୍ତକୋଟି ଯୁଗର ବାରତା ।
ସେ ଅଶ୍ୱ ଯାଇ ପଶିଲା ପଣ୍ଡବଳ ଦେଶେ
ଚନ୍ଦ୍ର କିରଣ ପରାୟେ ପ୍ରାଣେ ପ୍ରାଣେ ପଶେ ।
ଦେବଙ୍କ ଆଭରଣରେ ଭୂଷିତ ତା ଅଙ୍ଗ
କାଞ୍ଚନ ଗୃଲ ତାହାର ବଡ଼ଲ ସରାଗ ।
ଜନମନରଞ୍ଜନ ସେ ଚୌରଶୀ ଲକ୍ଷଣେ
ଦେଖି ରାଜାମାନେ ହର୍ଷହେବେ ମନେ ମନେ ।
ରାଜା ଆଗରେ କହିଲେ ଯାଇ ଦେଶାନ୍ତର
ଅପୂର୍ବ ଅଶ୍ୱ ପଶିଲା ଆସି ଆମ୍ଭ ପୁରେ ।
ଅପାର ରତ୍ନ ତାହାର ଦେହେ କେ ଖଞ୍ଜିଲା
ଶୁଣିଣ କର୍ଣ୍ଣକେଶରୀ ଆଟପ ଭଜେ କଲା ।
ଅଶ୍ୱକୁ ଦେଖିଣ ରାଜା ମୋହେ ପଡ଼ ନେତ୍ରେ
ମନ୍ତ୍ରୀ ଅମାତ୍ୟଙ୍କୁ ଘେନି ଧରେ ଯାଇ ଯେବେ
ଅଶ୍ୱ ପ୍ରତିବାକ୍ୟ କରେ ରାଜା ଶୁଣ ମୋତେ
ମୁହିଁ ଦେବଅଶ୍ୱ ତୁହି ହରିବୁ କେମନ୍ତେ ।
ଅଶ୍ୱିନୀକୁମାର ବାକ୍ୟେ ଅଇଲି ରାଜନ
ମୋତେ ପୁଣି ସାଜଅଛି ପାଣ୍ଡବ ଅର୍ଜ୍ଜୁନ ।
ଅଶ୍ୱ ମୁଖରୁ ଶୁଣନ୍ତେ ଏମନ୍ତ ସୁଲଭ
ରାଜନ ନରେନ୍ଦ୍ର ଏହା ବଡ଼ାଇ ଦୁର୍ଲ୍ଲଭ ।

ଅଶ୍ୱ ହୋଇ ଭାଷଇ ଏ ମନୁଷ୍ୟର ବାଣୀ
ପାଣ୍ଡବ ନାମ ଧରନ୍ତେ ଗ୍ରହେ ନୃପମଣି ।
ତା ତହୁଁ ମନ୍ତ୍ରିମାନ ଅଶ୍ୱ ଲକ୍ଷଗୁଣ ଧନେ
ସମର୍ପିଲେ ଅର୍ଜ୍ଜୁନର ଗ୍ରାମୁରେ ଯତନେ ।
ଶୀଘ୍ରେ କର୍ଣ୍ଣକେଶରୀ ସହସ୍ରେ ପ୍ରଣମି
କହିଲେ ଅନେକ ତୋଷ କଲ ଦେବ ସ୍ୱାମୀ
ଶୁଣି ଆନନ୍ଦ ହୋଇଲେ ବୀର ଫାଲଗୁନ
ଅଶ୍ୱମେଧ ଯାଗକୁ ଯା ତୋର ଜନ ଘେନ ।
ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ପବନ ବେଗେ ଚଳଇ ବାସବର ସୂନୁ ।
ପଶ୍ଚିମ ଦେଶେ ଚଳଇ ଗହନ କନ୍ଦରେ
ଭଜସ୍ତ ସେ ଗୌରବର ମଗଧ ଦେଶରେ ।
ନନ୍ଦ ଭୂପାଳ ଅଟଇ ଜରାସନ୍ଧ ପିତା
ଜରାସୁତ ସହଦେବ ମହାବଳବନ୍ତା ।
ଜରାସନ୍ଧକୁ ମାଇଲା ବୀର ବୃକୋଦର
ସହଦେବ ସ୍ୱୟଂ ପୁତ୍ର ଅଟଇ ତାହାର ।
ତାକୁ ରଜା କଲା ଭୀମସେନ ସେହି ରାଷ୍ଟ୍ରେ
ଭାରତଯୁଦ୍ଧେ ସେ ଥିଲା ପାଣ୍ଡବଙ୍କ ଆଟେ ।
ସହଦେବର ନନ୍ଦନ ମହାଦେବ ନୃପ
ତାହାର ରାଜ୍ୟରେ ଅଶ୍ୱ ପଶେ ଦେଇ ଧାପ ।
ବିଚକ୍ଷଣ ଅଶ୍ୱ ଅଙ୍ଗେ ରତ୍ନଖଞ୍ଜା ଅଛି
ଯେ ଛାଡ଼ିଦେଇ ସେ ଅଶ୍ୱକୁ କେ ଅବା ମୂରୁଛି
ଅଶ୍ୱ ଅଇଲା ଦୂଷଣ ନାମେ ସେନାପତି
ବାନ୍ଧନେଇ ଦେଲା ମହାଦେବର ଯେ କନ୍ତି ।
ରାଜାକୁ ଦେଖି ହସିଲା କୁବଳୟା ହୟ
ତା ଦେଖି ଆଶ୍ଚର୍ଯ୍ୟ ହେଲା ମହାଦେବରାୟ ।
କମ୍ପୁତ କାରଣ ଏହା କହ ସେନାପତି
ମନୁଷ୍ୟ ପ୍ରାୟ ହସଇ ଏ କେଉଁ ଯୁକତି ।
ସନ୍ନିଧେ ଯାଇ କହଇ ତାକୁ ମହାରାଜ
କେ ଅଶ୍ୱ ତୁ ପଶୁହୋଇ ହସୁ କି ଆଶ୍ଚର୍ଯ୍ୟ ।
ଅଶ୍ୱ ବୋଇଲା ମୁଁ ଅଟେ ଆକାଶର ହୟ
କୁବଳୟା ନାମମୋର ମୋତେ ଧନଞ୍ଜୟ
ଆଣିଅଛି ଅଶ୍ୱମେଧ କରିବେ ଯୁଧିଷ୍ଠି
ରାଜା ବରିବେ ଧରିଲେ ହୋଇବ ଅନିଷ୍ଟି ।
ଶୁଣିଣ ସାନନ୍ଦ ହେଲା ମହାଦେବ ରାଜା
ସେ ପାଣ୍ଡବ ଯୋଗୁଁ ନାଶଗଲେ ମୋର ଅଜା ।

ପିତାଙ୍କ ପଡ଼ିଲ ମୋର ସେ ଭାରତ ଯୁଦ୍ଧେ
ପାଇଲି ମୁଁ ପାଣ୍ଡବଙ୍କୁ ମୋର ବଂଶ କ୍ରୋଧେ ।
ଏତେ ବୋଲି ଅଶ୍ୱକୁ ସେ ତୃପ୍ତ କରି ଧରି
ଅର୍ଜୁନ ଗୁହିଁଲ ପୁଣି ପଞ୍ଚଦଶ ଘଡ଼ି ।
ବାଟ ଯୁହାଁନ୍ତେ ଯତ୍ନ ସେ ଅଶ୍ୱ ନ ଆସଇ
ଏକାକୀ ହୋଇ ଅର୍ଜୁନ ସେ ରାଜ୍ୟେ ପଶଇ ।
ଦେଖି ଉଗାଳଲେ ତାଙ୍କୁ ଅନେକ ସଇନ
ନାଶଟେ ବଧାଚ ତାଙ୍କୁ କଲେ ଫାଲଗୁନ ।
ଏକ ପ୍ରହାରେ ଅନେକ ସୈନ୍ୟ ତହିଁ ଲୋଟି
ଦେଖି ଗଜେନ୍ଦ୍ର ସମରେ ଆସେ ଗଲା ଉଠି ।
ଅର୍ଜୁନ ବୋଇଲେ ଆହେ ଶୁଣିବାକ ତୁମ୍ଭେ
ରାଜା ନିମନ୍ତ୍ରଣ କରି ଆସିଅଛୁ ଆମ୍ଭେ ।
ଅବୋଧେ ନାଶ ନ କର ମୋର ସୈନ୍ୟବଳ
ସୈନ୍ୟ ଘେନ ଆସେ ଅଶ୍ୱମେଧ ଯାଗେ ଚଳ
ମନ୍ତ୍ରୀ ତାହାଙ୍କୁ ବୁଝାଏ ଶୁଣ ନରପତି
ତ୍ରୈଲୋକ୍ୟ ମଧ୍ୟରେ ପାର୍ଥ ଅଟେ ଏକ କ୍ଷତ୍ରୀ
ଏମନ୍ତ ମହିମା ଯହୁଁ ଶୁଣିଲେକ ରାୟ
ନିଉଛାଳ କଲା ସହଦେବର ତନୟ ।
ନିମନ୍ତ୍ରଣ କରି ତାଙ୍କୁ ବୋଲଇ ଫାଲ୍‌ଗୁନ
ଏବେକ୍ଷଣି ଚଳ ତୁ ହୋ ପାତ୍ରମନ୍ତ୍ରୀ ଘେନ ।
ଲକ୍ଷେ ରାଜା ମଧ୍ୟେ ଯାଇଁ ଘେନ ଅର୍ଘ୍ୟମାର
ଚଳିଲା ସେ ମହାଦେବ ହସ୍ତିନା ନଗର ।
ଅର୍ଜୁନ ସେ ଅଶ୍ୱ ବେଗେ ଦେଲେକ ଚଳାଇ
ଭାନୁମତୀ ପୁରେ ସେହୁ ପଶିଲେକ ଯାଇଁ ।
ଅଭୟମନ୍ତୁ ବୋଲି ଯେ ତହିଁରେ ନୃପତି
ଅଶ୍ୱକୁ ଦେଖି ମିଳିଲା ଆସି ତାର କତି ।
ଅପୂର୍ବ ଦେଖି ଧରିବାପାଇଁ କଲା ଇଚ୍ଛା
ଅଶ୍ୱ ବୋଇଲା ମୃତ୍ୟୁକୁ ନ କର ତୁ ବାଞ୍ଛା ।
ପାଣ୍ଡବେ କରିବେ ପୁଣି ଅଶ୍ୱମେଧ ଯାଗ
ଯୋଦ୍ଧାଙ୍କୁ ଘେନ ରାଜା ତୁ ଚଳ ହୋଇ ବେଗ
ଅର୍ଜୁନ ଦେବ ଅଛନ୍ତି ଗଙ୍ଗା ନଦୀକୂଳେ
ଶୁଣି ଦନ୍ତୀ ଘେନ ମହୀପାଳ ବେଗେ ଚଳେ ।
ଅନେକ ପୂଜା କରଇ ଫାଲ୍‌ଗୁନଙ୍କୁ ଯାଇ
ବହୁତ ଧନ ରତନ ସଙ୍ଗତରେ ନେଇ ।
ନିମନ୍ତ୍ରଣ ଦେଇ ପାର୍ଥ କହେ ସର୍ବ କଥା
ସମଦଣ୍ଡ ଘେନ ତୁ ହୋ ଚଳ ମହାରଥୀ ।

ଅଶ୍ୱମେଧ ଯାଗରଟି ଯେତେକ ବିଧାନ
ଅନେକ ଦ୍ରବ୍ୟ ଘେନିଣ ଚଳେ ସେ ରାଜନ ।
ପାତ୍ର ମନ୍ତ୍ରୀ ସଙ୍ଗ ତହୁଁ ହସ୍ତିନାକୁ ଗଲା
ଅଶ୍ୱ ଘେନ ବେଗେ ପାର୍ଥ ସେଠାରୁ ଚଳିଲା ।
ବେଲକ ଦେଶରେ ଯାଇଁ ବିଜେ ସବ୍ୟସାଚୀ
ବେଲକସେନ ଅଶ୍ୱକୁ ଧରିବାକୁ ଇଚ୍ଛି ।
ଅଶ୍ୱ ବୋଇଲା ମୁଁ ଅଟେ ଅର୍ଜୁନର ହୟ
ଅଶ୍ୱମେଧ ଯାଗକୁ ହୋ ଚଳ ବେଗେ ରାୟ
ଅର୍ଜୁନହିଁ ବିଜେକଲେ ଅଶ୍ୱ ପଛେ ପଛେ
ରାଜାର ଯେ ପୂଜାବିଧି ଘେନିଲେ ବବସ୍ତ୍ରେ ।
ମଣୋହି ଯୋଗାଡ଼ କରି ଲୋଡ଼ଇ ସେ ରାୟ
ନାସ୍ତି କରି ତହୁଁ ଚଳିଗଲେ ଧନଞ୍ଜୟ ।
ଏଥୁପରେ ବହୁ ଦେଶୁଁ ବହୁତ ନୃପତି
ନିମନ୍ତ୍ରି ଚଳେ ବଚନସାର୍ଥ୍ୟର ଯେ ଜାତି ।
ତହୁଁ ସେ ତାହାଳ ଦେଶେ ଯାଇଣ ମିଳଇ
ଅଶ୍ୱ ଘେନ ରାଜାମାନେ ବିସ୍ମୟ କରଇ ।
ଅଶ୍ୱକୁ ଧଇଲେ ବଳେ ଶୂରବର ରାୟ
ଅଶ୍ୱ ବୋଇଲେକ ଆସୁଅଛି ଧନଞ୍ଜୟ ।
ଶୁଣିଣ ତାହାଳେଶ୍ୱର କଲା ଅଶ୍ୱପୂଜା
ଅର୍ଜୁନ ସମ୍ମୁଖେ ବିଜେ ତାହାଳେଶ ରାଜା ।
ପଞ୍ଚଗୋଟି ଭୁଜଙ୍ଗମ ଘେନ ମହୀପାଳ
ପ୍ରଚଣ୍ଡ ମଣ୍ଡକ୍ତ ବେଗେ ଚଳେ ତତକାଳ ।
କ୍ଷୀର ଦେଶେ ପ୍ରବେଶିଲା ବୀର ଫାଲଗୁନ
ଅଶ୍ୱ ସଙ୍ଗରେ ଅନେକ ରତ୍ନ ଅଛି ଘେନ ।
ଧର୍ମସେନ ବୋଲି ଅଟେ ତହିଁର ନୃପତି
ସେ ରାଜା ଅଶ୍ୱକୁ ଯାଇ ଧଇଲା ଚଉତି ।
ଅଶ୍ୱ ବୋଇଲା ତୁ ମୋତେ ନ ଧର ହୋ ରାୟ
ଅଶ୍ୱମେଧ ଯାଗପାଇଁ ପାର୍ଥ ଦିଗ୍‌ବିଜୟ ।
ଶୁଣିଣ ସାନନ୍ଦ ହେଲା କ୍ଷୀରଦେଶ ରାଜା
ଅନେକ ସମ୍ଭାର ଦେଇ କଲା ଅଶ୍ୱ ପୂଜା ।
ଅର୍ଜୁନ ବିଜୟ କଲେ ତହିଁ ବେଗେ ଯାଇଁ
ଅନେକ ଭକତି ତାଙ୍କୁ କଲା ନରସାଇଁ ।
ନିମନ୍ତ୍ରଣ ଯୋଗାଡ଼ ଯେ ଦେଲେକ ବିବସ୍ତ୍ର
ଚଳ ଅଶ୍ୱ ଘେନ ଅଶ୍ୱମେଧକୁ ପ୍ରତ୍ୟକ୍ଷ ।
ଶୁଣିଣ ସେ ରାଜା ଗଲା ସୈନ୍ୟଭୂଲେ ସାଜ
ତାହାର ସଙ୍ଗତେ ଅଛି ଦଶଲକ୍ଷ ବାଜି ।

ଅଶ୍ୱମେଧ ଯାଗକୁ ଯେ ଚଳେ ନରପତି
ସମସ୍ତ ରାଜାଏ ସମାରୋହରେ ଚଳନ୍ତି ।
ମାଧୂର୍ଯ୍ୟ ଦେଶର ରାଜା ମଧୁସେନ ରାୟ
ତାହାର ରାଜ୍ୟରେ ଯାଇ ପଶିଲା ସେ ହୟ ।
ଅଶ୍ୱକୁ ଧରନ୍ତେ ସେହୁ କହିଲା ଯେ କଥା
ପାଣ୍ଡବଙ୍କ ଅଶ୍ୱମେଧ ଯାଗର ବାରତା ।
ଅର୍ଜୁନଙ୍କୁ ଯାଇ ଦରଶନ କଲା ରାଜା
ଅର୍ଜୁନ ବୋଇଲେ ଅଶ୍ୱ ବଳ ଘେନ ଯା ଯା ।
ସକଳ ଅଶ୍ୱମାନଙ୍କୁ କରି ରତ୍ନମୟ
ଚଳଇ ସେ ଇନ୍ଦ୍ରପ୍ରସ୍ଥେ ମଧୁସେନ ରାୟ ।
ତହୁଁ ପୁଣ ଅର୍ଜୁନ ସେ ଅଶ୍ୱକୁ ଚଳାଇ
ମାନଭଙ୍ଗ ରାଜ୍ୟେ ପୁଣି ପ୍ରବେଶିଲେ ଯାଇ ।
ଧୀର ଅର୍ଜୁନ ବୋଲି ଯେ ତହିଁର ନୃପତି
ତାହାର ରାଜ୍ୟରେ ଅଶ୍ୱ ପଶିଲାକ ଧାତି ।
ଅଶ୍ୱକୁ ଧରନ୍ତେ ସବୁ କହିଲାକ ହୟ
ଶୁଣି ସେ ଅଶ୍ୱକୁ ପୂଜା କଲା ମହାରାୟ ।
ନିମନ୍ତ୍ରଣ ଯୋଗାଡ଼କୁ ଦେଇ ଅରଜୁନ
ଅଶ୍ୱ ଘେନ ତହିଁ ବୀର ଚଳଇ ବହନ ।
ସାନନ୍ଦ ବଳ ରାଜ୍ୟରେ ରାଜା ବୃହନ୍ନାଳୀ
ଅଶ୍ୱ ଘେନ ଅର୍ଜୁନ ତା ରାଜ୍ୟେ ଯାଇଁ ମିଳି ।
ଅଶ୍ୱ ଧରନ୍ତେ କହିଲା ସେ ସକଳ କଥା
ଅଶ୍ୱବଳ ଘେନ ବେଗେ ଚଳେ ମହାରଥୀ ।
ନନ୍ଦବନେ ଯାଇ ବିଜେ କଲେ ସବ୍ୟସାଚୀ
ନନ୍ଦକେଶ୍ୱର ଯେ ତହିଁ ବିଜେ କରି ଅଛି ।
ନନ୍ଦକେଶ୍ୱର ଯେ ରୁହାଇଲେ ଅର୍ଜୁନଙ୍କୁ
ଅମୃତ ପାନ ଭୋଜନ ଦେଲେକ ତାହାଙ୍କୁ ।
ଯଥାବିଧିରେ ସେଠାରେ ସାରିଲେ ଭୋଜନ
ଆଚମନ ସାରି କଲେ ତାମ୍ବୁଳ ଚର୍ବଣ ।
କହିଲେ ନନ୍ଦକେଶ୍ୱର ରାଜା ପରମାର୍ଥ
ଅମୃତ ଲଡ଼ୁକୁ ଦେଲେ ଅର୍ଜୁନର ହସ୍ତ ।
ଭୁଞ୍ଜିଲେ ଯେ କ୍ଷୁଧା ତୃଷା ନ ଆସିବ କତ
ଏମନ୍ତ କହିଲେ ତାଙ୍କୁ ସେହୁ ମହାଯତି ।
ନନ୍ଦକେଶ୍ୱର ସମ୍ବୋଧି ଗଲେ ବୀର ପାର୍ଥ
ଉଡ଼ଙ୍ଗ ଦେଶରେ ଯାଇ ପ୍ରବେଶ ତୁରିତ ।
ଅଶ୍ୱ ଚଳାଇ ଚଳଇ ତହୁଁ ଧନଞ୍ଜୟ
କନ୍ଦର ନଗରେ ଯାଇଁ କରଇ ବିଜୟ ।
କନ୍ଦର୍ପରାଜାକୁ ତହିଁ କରଇ ବରଣ
ଅଶ୍ୱବଳ ଘେନ ତୋଳ ଚଳ ଏହିକ୍ଷଣ ।
କଳିଙ୍ଗ ଦେଶେ କଳିଙ୍ଗସେନ ଯେ ନୃପତି
ତାହାକୁ ବରଣ ଦେଇ ବାସବ ସନ୍ତତି ।
ମ୍ଳେଖାର ମଣ୍ଡଳେ ଯାଇଁ ମିଳେ ଅଶ୍ୱ ସେନ
ପାଣି ମଣ୍ଡଳ ଯେ କାଞ୍ଚି ନଗ୍ର ଏହୁ ତନ ।
ଲକ୍ଷଣବନ୍ତ ଅଶ୍ୱକୁ ଧଇଲେ ନରେନ୍ଦ୍ର
ଅଶ୍ୱ ବୋଇଲା ମୋ ଲାଗି ହେବ ବଡ଼ ଦ୍ୱନ୍ଦ୍ୱ ।
ବୋଲେ ମହୀପତି ମୋତେ ତ୍ରୈଲୋକେ କେ ସରି
ଲକ୍ଷଣବନ୍ତ ତୁ ମୋତେ କାହୁଁ ଭେଟ ପାରି ।
ଏଣେ ବାଟ ଚାହିଁ ପାର୍ଥ ବିସ୍ମୟ ହୋଇଲା
ଏତେବେଳ ଯାଏଁ କପାଁ ଅଶ୍ୱ ନ ଆସିଲା ।
ଧନୁଶର ଘେନ ତହୁଁ ବିଜେ ସବ୍ୟସାଚୀ
ରାଜ୍ୟ ଭିତରେ ତାହାର ପଶିଯାଇଅଛି ।
ଅର୍ଜୁନ ବୋଇଲା ଶୁଣ ଆରେ ଦେଶାନ୍ତର
ଯାଇଁ ଜଣାଅ ତୋହର ରାଜାର ଛାମୁର ।
ପାଣ୍ଡବଙ୍କ ଅଶ୍ୱମେଧ ଯାଗ ବୋଲି କହ
ଆକାଶର ଅଶ୍ୱ ତୁ ହୋ ବେଗେ ଛାଡ଼ିଦିଅ ।
ରାଜା ଆଗରେ କହିଲେ ବେଗେ ଦୂତଗଣ
ବୋଲେ ମହୀକେଶରୀ ତା ଶିର ଛେଦି ଆଣ ।
ରାଜାର ଆଜ୍ଞାରେ ଯୋଦ୍ଧା ଗଲେ ବେନକୋଟି
ଶରେ ପୁର କରି ଯାଇଁ ବେଢ଼ିଲେ କସଟି ।
କାମ୍ୟକ ଶର ଅର୍ଜୁନ ତହୁଁ ବେଗେ ସନ୍ଧି
ବେନ କୋଟି ଯୋଦ୍ଧାଙ୍କର ଶିରଦେଲା ଛେଦି
ଜଗତରେ ଥାଇ ତାହା ଦେଖେ ମହୀପାଳ
ଆପେ ବିଜେ କଲା ଘେନ ଚତୁରଙ୍ଗ ବଳ ।
ହସ୍ତିଏ ଚଢ଼ି ଅର୍ଜୁନ ପାଶକୁ ସେ ଆସେ
କି ନିମନ୍ତେ ମୋର ସୈନ୍ୟ ମାଇଲୁ ନିର୍ଦ୍ଦୋଷେ
ଅର୍ଜୁନ ବୋଇଲେ କପାଁ ଧଇଲୁ ତୁ ହୟ
ସେ ଅଶ୍ୱ ଧଇଲେ ମୋର ନ ସହଇ ଦେହ ।
ବୋଇଲା ମହୀକେଶରୀ ଅଶ୍ୱମେଧ କରି
ଦେଲେକ ନ ସହି ସୈନ୍ୟ ମାଇଲୁ ମୋହର
ତୁ ଯେ ସଇନ୍ୟ ମୋହର କଲୁ ପ୍ରାଣେ ନାଶ
ଏକାଜଣେ ସିନା ତୋର କାଟିବି ମାଉଁସ ।
ହାକୋଡ଼ା ଶରେକ ତହୁଁ ମାଇଲେ ଅର୍ଜୁନ
ଗଜରେ ଉଭାନଷ୍ଟାୟୀ ହେଲା ସେ ରାଜନ ।

ରାଜାର ଷଡ଼ଙ୍କେ ଭୟେ ପଳାଇଲେ ଥାଟ
ରହ ରହ ବୋଲି ଡାକେ ଦ୍ରୋଣଗୁରୁ ସୁତ ।
କ୍ଷଣକରେ ପାଶେକ ଘେନି ସେ ପାଇ ଅର୍ଜୁନ
ମସ୍ତକେଶପ ରାଜାଙ୍କୁ କରଣ ବନ୍ଧନ ।
ଶିର ଛେଦିବ ଇଚ୍ଛନ୍ତେ ଦେଖି ଅମାତ୍ୟେ
ରଖ ରଖ ପାର୍ଥ ବୋଲି ବୋଲନ୍ତି ସମସ୍ତେ ।
ବହୁ ପାପ ହେବ ରାଜା ଶିରଚ୍ଛେଦ ହେଲେ
ଏହା ବୋଲି ପାର୍ଥପାଦେ ସର୍ବେ ପ୍ରଣମିଲେ ।
ସମସ୍ତଙ୍କ କଥା ଶୁଣି ବୋଲନ୍ତି ଅର୍ଜୁନ
ବାନ୍ଧି ଏହାକୁ ଯଜ୍ଞକୁ କର ହେ ଗମନ ।
ରାଜାକୁ ବୁନ୍ଦର ଘେନିଯାଅ ଏହିମତେ
ଯଜ୍ଞ ବରଣେ ଯାଆନ୍ତି ନୃପତି ସମସ୍ତେ ।
ଏମନ୍ତ ବନ୍ଧନ କରି ଘେନି ତୁମ୍ଭେ ଯିବ
ବାଟରେ ଫେଡ଼ିଲେ ଶିର ଛେଦନ ହୋଇବ
ବନ୍ଧନ କରି ନଅନ୍ତେ ଦେଖି ରାଜାମାନେ
ଅନ୍ତରେ ଯେ ମହାଭୟ କଲେ ମନେ ମନେ
ଶୁଣ ବୈବସ୍ୱତ ମନୁ କହନ୍ତି ଅଗସ୍ତି
ଭୟରେ ସମସ୍ତେ ରାଜା ବହନ ଚଳନ୍ତି ।
ଅନେକ ଧନ ରତ୍ନରେ ମଣ୍ଡି ହସ୍ତୀ ଯାନ
ଶ୍ୱେତ ଚାମର ଡାଳମ୍ବାନେତ ନାନା ବର୍ଣ୍ଣ ।
ପାଟ ପତନୀ ସିନ୍ଦୁଆ ଆଦି ଦାସୀନେତ
ଗଜ ମୁକୁତା ମାଣିକ୍ୟ ମଣି ନାନାରତ୍ନ ।
ପଶ୍ଚିମରେ ଦୁଇଗୁଣା ପଞ୍ଚାଶ ସହସ୍ର
ସମସ୍ତ ପଠାଇ ଦେଇ ଗଲେ ଇନ୍ଦ୍ରଶିଷ୍ୟ ।
ଦକ୍ଷିଣରେ ଏକଗୁଣା ସାତସସ୍ର ନୃପ
ପୂର୍ବ ଦିଗରେ ତିରିଶ ସହସ୍ର ଯେ ଭୂପ ।
ଅଶ୍ୱ ଚଳାଇ ଏତେକ ଅର୍ଜୁନ ନମନ୍ତି
ଉତ୍ତର ଦିଗକୁ ଗଲେ ଅଶ୍ୱ ଘେନି ଧାତି ।
ରତନପୁର ନଗରେ ବଭ୍ରୁପାକ୍ଷ ରାୟ
ତାହାର ପୁରେ ପଶିଲା ଯାଇଁ ଦେବହୟ ।
ଦିବ୍ୟ ଅଳଙ୍କାର ଘେନି ପଶନ୍ତେ ରାଜ୍ୟରେ
ଲୋକେ ଧରି ନେଇ ଦେଲେ ରାଜାର ଛାମୁରେ
ଅଶ୍ୱ ନେଇ ଚନ୍ଦ୍ରଶାଳାପୁରେ ରାଜା ଥୋଇ
ଅଶ୍ୱ ବୋଇଲା ଆମ୍ଭଙ୍କୁ ଛାଡ଼ ନରସାଇଁ ।
ତନଢଗ ନିମନ୍ତ୍ରଣ କଲେଣ ଯେ ପାର୍ଥ
ତନଗୁଣା ସତାଅଶୀ ସସ୍ର ନରନାଥ ।

ଏକାଳେ ଅର୍ଜୁନ ସେହି ରାଜ୍ୟରେ ପଶିଲେ
ଗୋଳ କରି ଯୋଦ୍ଧାମାନେ ଆସି ଓଗାଳିଲେ
ପାଞ୍ଚ ଅଇବ୍ରତ ଯୋଦ୍ଧା ଆବୋରିଲେ ପନ୍ଥ ।
ହାବୋଡ଼ା ଶର ବନ୍ଧିଲେ ଦେଖି ପାର୍ଥ ତନ୍ତ୍ର ।
ପଡ଼ିଲେ ସମସ୍ତେ ତହିଁ ଯେ ହୃଷିକଣାସ୍ତ୍ରୀ
ଅଚେଷ୍ଟା ହୋଇଲେ କାହା ଦେହେ ଜ୍ଞାନନାହିଁ
ଧର୍ମ ଯଜ୍ଞ ଅର୍ଥେ ନ ମାଇଲେ ତାଙ୍କୁ ପ୍ରାଣେ
ଏହା ଦେଖି ରାଜା ବଳେ କଲେ ଯେ ଆପଣେ
ଦଶସହସ୍ର ଯୋଦ୍ଧାଙ୍କୁ ଘେନି ଦଣ୍ଡଧାରୀ
ଅର୍ଜୁନଙ୍କୁ ବେଢ଼ିଲେ ଯେ ଶତେପୁର କରି ।
ଅର୍ଦ୍ଧକ୍ଷଣେ ନାରାଚ ଯେ ବନ୍ଧେ ଫାଲଗୁନ
ମୋହେ ପଡ଼ିଲେକ ବଭ୍ରୁପାକ୍ଷର ସଇନ ।
ରାଜା ମଧ୍ୟ ପଡ଼ିଗଲା ଶସ୍ତ୍ର ବିଘାତରେ
ଅସାଷ୍ଟମ ହୋଇ ପଡ଼ିଗଲେ ସର୍ବ ପାରେ ।
ରାଜାର ଶିରଚ୍ଛେଦନ କରନ୍ତେ ଅର୍ଜୁନ
ଆକର୍ଷି କଟାର କରେ କଲେକ ଧାରଣ ।
ବନସ୍ତେ ବୋଇଲେ ତହୁଁ ଭୁବଳସ୍ତା ଅଶ୍ୱ ।
ଛାଡ଼ ଛାଡ଼ ପାର୍ଥ ତବ ଧର୍ମ ହେବ ନାଶ ।
ଅଶ୍ୱର ବଚନେ ତାକୁ ଛାଡ଼ିଲେ ଅର୍ଜୁନ
ଅଶ୍ୱମେଧ ଯାଗକୁ ଯେ କଲେ ନିମନ୍ତ୍ରଣ ।
ତହୁଁ ଯେ ରାଜନ ନିଜ ଦଳବଳ ଘେନି
ହସ୍ତିନାପୁରକୁ ଚଳିଗଲା ତତକ୍ଷଣି ।
ତହୁଁ ଉତ୍ତର ଦିଗରେ ଚଳଇ ଫାଲ୍‌ଗୁନ
ସେ ଗଲି ରାଜ୍ୟେ ମିଳିଲା ଯାଇ ଅଶ୍ୱଘୋନ
ସେ ଗଲି ରାଜାର ପୁଅ ବ୍ରହ୍ମସେନ ରାଜା
ଅଶ୍ୱକୁ ଦେଖି ଅନେକ କରି ତାର ପୂଜା ।
ନିମନ୍ତ୍ରଣ ଘେନି ଅଶ୍ୱମାନଙ୍କର ଭୁଲେ
ଇନ୍ଦ୍ରପ୍ରସ୍ଥ ରାଜ୍ୟକୁ ସେ ବେଗେ ଚଳିଗଲେ ।
ପଞ୍ଚାଳ ଦେଶରେ ଯାଇ ବଳେ ଧନଞ୍ଜୟ
ମଧୁକେଶ୍ୱର ଯେ ଧୃଷ୍ଟଦ୍ୟୁମ୍ନର ତନୟ ।
ଅଶ୍ୱକୁ ଦେଖି ଉତ୍ସବ କରାଇ ରାଜ୍ୟରେ
ମଣୋହି କରଇ ସର୍ବ୍ୟସାତା ସେ ପୁରରେ ।
ନିମନ୍ତ୍ରଣ ଦେଇ ତାଙ୍କୁ ଚଳିଗଲେ ପାର୍ଥ
କାହାରିଲା ଦଳବଳ ଘେନି ସେ ସମସ୍ତ ।
ତହୁଁ ଶିବପୁର ନଗ୍ରେ ଚଳଇ ତହିଁତ
ବସ୍ତୁ କରି ପଣ୍ଡା ତହିଁ ରାଜ୍ୟକୁ ପାଳନ୍ତି ।

ଅଶ୍ୱ ପଶନ୍ତେ ଧରେ ଯେ ଯାଇଁ ତତକ୍ଷଣ
ରତ୍ନମାନଙ୍କୁ ଛଡ଼ାଇ ଘେନଲା ବ୍ରାହ୍ମଣ ।
ଅଶ୍ୱ ବୋଇଲାକ ତୁ ହୋ ଶୁଣ ବଷ୍ଟୁକର
ମୁହିଁ ଦେବଦତ୍ତ ମୋର ପଛେ ପାର୍ଥବୀର ।
ମତ୍ତଗର୍ବେ ତାହା କଥା ନ ଶୁଣଇ ଦ୍ୱିଜ
ଧନରତ୍ନ ସ୍ୱନରକୁ କରଇ ଗାନ୍ଧର୍ଯ୍ୟ ।
ଅଶ୍ୱର ବିଳମ୍ବ ଦେଖି ବୀରବର ପାର୍ଥ
ରାଜ୍ୟରେ ପ୍ରବେଶ ହେଲା ଧନୁଶର ହସ୍ତ ।
ଦେଖିଣ ଧାମନ୍ତ ଯୋଦ୍ଧା ଉପାଧ୍ୟ ବ୍ରାହ୍ମଣ
ବେଢ଼ି ବନ୍ଧିଲେ ପାର୍ଥଙ୍କୁ ବଜ୍ରସମ ବାଣ ।
ତମିର ଶରେକ ପେଷି ଦେଲେ ସବ୍ୟସାଚୀ
ମୋହ ଗଲେ ଦ୍ୱିଜବର ଚେତା ନାହିଁ କିଛି ।
ସଇନ୍ୟଙ୍କ ଅଚେତନ ଦେଖି ବଷ୍ଟୁକର
ଆପେ ବିଜେ କଲା ଘେନ ପାଞ୍ଚଲକ୍ଷ ବୀର ।
ମକରକେତନ ଜାଣି ଦକ୍ଷେ ତାର କାୟ
ବଶଇ ସେହି ଅଳକାନାଥର ଉପାୟ ।
ଉଚ୍ଚୈଃଶ୍ରବା ପ୍ରାୟେ ଏକ ଆଗେନ୍ତୁଛୁ ଅଶ୍ୱ
ଅର୍ଜୁନ ଯୁଦ୍ଧରେ ମିଳେ ବଷ୍ଟୁକର ଦାସ ।
ଦ୍ୱିଜବୋଲେ ନର ହୋଇ ଖଣ୍ଡୁ ମୋ ରାଜ୍ୟକୁ
ସତେ କି ଆଶା କରିଛୁ ତୁ ଅଶ୍ୱ ନେବାକୁ ।
ଦେଖି ମନେ ବିସ୍ମଇ ବୀର ଫାଲଗୁନ
ବଷ୍ଟୁକର ପଣ୍ଡା ଏତ ନ ପାରଇ ଚିହ୍ନି ।
ଦରହସତ ବଦନେ ବୋଲେ ଧନଞ୍ଜୟ
ଚିହ୍ନି ନ ପାରଣ ପଣ୍ଡା କାହ୍ନି ଆମ୍ଭ ହୟ ।
ତୁମ୍ଭେ ଯେ ଥିଲ ନଗର ବାହାରରେ ଯାଇ
ଭିକ୍ଷାପାଏ ତୁମ୍ଭ ଘରେ ଥିଲୁ ପାଞ୍ଚଭାଇ ।
ଗଙ୍ଗତମୀ ଘାଟେ ଆମ୍ଭେ ଗଲୁ ସ୍ନାନ କରି
ଭୀମସେନ ଠାକୁରେ ଯେ ଷଣ୍ଡାନଙ୍କୁ ମାରି ।
ଶୁଣି ବଷ୍ଟୁକର ବେଗେ ଚେକ ଭୁଜଙ୍ଗମ
ପାଦ୍ୟ ଅର୍ଘ୍ୟ ଦେଇ କଲା ଅର୍ଜୁନେ ପ୍ରଣାମ ।
ଅନେକ ବିନୟ ଭକ୍ତିଭାବକୁ ଦେଖାଇ
ପାର୍ଥବୋଲେ ରହିବାକୁ ମୋତେବେଳନାହିଁ
ମକର ମାସେ ହୋଇବ ଅଶ୍ୱମେଧ ଯାଗ
ଏକାଜଣେ ନିମନ୍ତ୍ରିବ ଯାଇଁ ସୁର ଦଗ ।
ଅଶ୍ୱମେଧ ଅଶ୍ୱ ଘେନ ଚଳ ଯା ବହନ
କଥାବାର୍ତ୍ତା ହୋଇ ସିନା ଯାଇ ଯାଗସ୍ଥାନ ।

ବଷ୍ଟୁକର ଚଳିଲା ସେ ହସ୍ତିନାପୁରକୁ
ଅର୍ଜୁନ ଚଳିଲେ ତହୁଁ ଘେନିଣ ଅଶ୍ୱକୁ ।
ଉଜାଣ ଦେଶ ରାଜାକୁ ନିମନ୍ତ୍ରଣ ଦେଲେ
ସେ ରାଜା ସମସ୍ତେ ତହୁଁ ପାର୍ଥ ଚଳିଗଲେ ।
ମହାରାଷ୍ଟ୍ର ଦେଶେ ମରହଟ୍ଟା ରାଜନକୁ
ନିମନ୍ତ୍ରି ଅର୍ଜୁନ ଘେନ ଚଳିଲେ ଅଶ୍ୱକୁ ।
ମହ୍ଲାର ଦେଶରେ ଯାଇଁ ପ୍ରବେଶ ଫାଲ୍‌ଗୁନ
ସେ ରାଜାକୁ ପେଷି ଚଳିଗଲେ ଅଶ୍ୱଘେନ ।
କାଶୀ ନଗ୍ରକୂଳରେ ଯେ ଅଛି ମହ୍ୟଇଶ
ଅଶ୍ୱଘେନ ପାର୍ଥ ତହିଁ ହୋଇଲେ ପ୍ରବେଶ ।
ଉତ୍ତରକୁମାର ପୁତ୍ର ମୃଗସେନ ରାୟ
ମଣୋହି ବଧି କଲାକ ତହିଁ ଧନଞ୍ଜୟ ।
ସେ ରାଜାକୁ ନିମନ୍ତ୍ରିଣ ବାସବୀ ଚଳିଲେ
ମାଳବ ଦେଶରେ ଯାଇଁ ପ୍ରବେଶ ହୋଇଲେ
ଚନ୍ଦ୍ରବ୍ରହ୍ମା ନାମେ ତହିଁ ଏକର ନୃପତି
ସକଳ ବୁଝାଇକରି ତାହାଙ୍କୁ ନିମନ୍ତ୍ରି ।
ତହୁଁ ସେ ବନ ଗହନେ ଚଳଇ ଫାଲ୍‌ଗୁନ
ସେ ରାଜା ଚଳିଲା ତେଣେ ଅଶ୍ୱମାନ ଘେନ
ଏକଚକ୍ର ନଗ୍ର ପାର୍ଥ ପ୍ରବେଶ ବହନ
ଦେବଶର୍ମା ବ୍ରହ୍ମଣ ଯେ ତହିଁର ରାଜନ ।
ମହାସୁଖରେ ଅଛଇ ପାଇ ଅଇଶ୍ୱର୍ଯ୍ୟ
ଉଗର ମୁଖୁଁ ବାରତା ଶୁଣି ସେହି ଦ୍ୱିଜ ।
ଅର୍ଜୁନକୁ ଦରଶନ କଲା ନରନାଥ
ଦେଖିଣ ସାନନ୍ଦ ହେଲା ବୀରବର ପାର୍ଥ ।
ଅନେକ ପୂଜା କରଇ ଦେବଶର୍ମା ଦ୍ୱିଜ
ତା ପୁରେ ଭୋଜନ କଲେ ବାସବଆତ୍ମଜ ।
ନିମନ୍ତ୍ରଣ କରଇ ଯେ ବୀର ଫାଲଗୁନ
ଇନ୍ଦ୍ରପ୍ରସ୍ଥେ ଯାଅ ତୁମ୍ଭେ ତୁମ୍ଭ ଅଶ୍ୱସେନ ।
ତହୁଁ ଅଶ୍ୱକୁ ଚଳାଇ ବୀରବର ପାର୍ଥ
କଉଁସା ଦେଶେ ପ୍ରବେଶ ହୋଇଲା ତୁରିତ
ମାଳବ ସେନ ବୋଲଣ ତହିଁ ଦଣ୍ଡଧାରୀ
ବାରତା ପାଇ ଅର୍ଜୁନେ ଦରଶନ କରି ।
ନିମନ୍ତ୍ରଣ ପାଇ ଚଳେ ଅଶ୍ୱବାନ ଘେନ
ଚଳନ୍ତେ ସେ ମହାରାଜା ଆସଇ ଫାଲ୍‌ଗୁନ
କର୍ଣ୍ଣାଟ ବୋଲଣ ରାଜ୍ୟ ମର୍ତ୍ତ୍ୟ ବାରସ୍ୱଛି
ତହିଁ ପ୍ରବେଶି ଚଚଚବାର୍ଯ୍ୟଙ୍କର ନାଭ ।

ଯଜ୍ଞ ଅଶ୍ୱକୁ ଦେଖି ସେ ରାଜା କୁତୂହଳେ
ଯତ୍ନେ ଧରି ଥୋଇଲା ସେ ରତ୍ନଥିବା ଘରେ
ସେ ଅଶ୍ୱ ବୋଇଲା ରାଜା କପାଁ ଧରୁ ମୋତେ
ବହୁ ରାଜା ନାଶଗଲେ ମୋ କଥା ନ ଘେନେ ।
ମନ୍ତ୍ରୀ ଦେଖି ବୋଇଲା ଦେବ ଶୁଣ ନୃପମଣି
ଅଶ୍ୱ ହୋଇ କହଇ ଏ ମନୁଷ୍ୟର ବାଣୀ ।
ଶୁଣି ନରେନ୍ଦ୍ର କହଇ କଲା ତହିଁ ଆଣ
ଏହାର ପାଇଁ ଦେଖିବା ଆମ୍ଭ କେତେ ଥାଟ ।
ମନ୍ତ୍ରୀ ବୋଇଲା ନ କଲୁ ଯେବେ ମୋରବୋଲ
କାଳେ ଜାଣିବା ହୋଇବ ମନ୍ଦ ଅବା ଭଲ ।
ଏସନ ସମୟେ ଯାଇଁ ବୀର ଧନଞ୍ଜୟ
ରାଜ୍ୟ ପଶନ୍ତେ ଉଗାଳ ପାଣ୍ଡବଙ୍କ ଚୟ ।
ବାଟ ନ ଛାଡ଼ନ୍ତେ ଦେଖି ବୀର ଫାଲଗୁନ
ଗନ୍ଧର୍ବ ଶର ପେଷିଲା କୋପେ କରେ ଘେନ ।
ସେ ଶସ୍ତ୍ରକୁ ଉଆରଇ ବୀର ସବ୍ୟସାଚୀ
ସକଳ ପଦାତି ସୈନ୍ୟ ମାରି ବାଛୁ ବାଛୁ ।
ଅଶ୍ୱମାନେ ଥାନ୍ତି ଏଣେ ଅଛି ଆମ୍ଭ କାର୍ଯ୍ୟ
ଏମନ୍ତ ଭିଆରି ବନ୍ଧ ଗନ୍ଧର୍ବ ନାରାଚ ।
ଆକାଶେ ଉଦ୍ଭବ ବନ୍ଧିଲା ଶର ଲକ୍ଷଣ ମୁନା
ନିମିଷ ମଧ୍ୟେ ଛେଦିଲା ସେ ସବୁରି ସେନା ।
ଏକା ନାରାଚେ ସବୁରି ସେନା ଗଲା ଫୁଟି
ପଡ଼ିଲେ କାନ୍ତରାଜାର ବଳ ମହୀ ଲୋଟି ।
ଯେ ଅବା ଉବରି ପଳାଇ ଗଲେ ପ୍ରାଣ ଘେନି
ରାଜାର ଛାମୁରେ ଯାଇ କହନ୍ତି ଦଇନୀ ।
ଶୁଣି କୋପେ ପ୍ରଜ୍ୱଳର ହେଲା ମହାରାଜ
ଦଣ୍ଡ ସାଜଇ ଲକ୍ଷେକ ମାହୁନ୍ତ ସେ ଗଜ ।
ଗଜ ବଳଦେଖି କୋପେ ପାର୍ଥ ବୀରମଣି
ଖୁର୍ପ ନାରାଚ ବନ୍ଧିଲା କାର୍ମୁକକୁ ଟାଣି ।
ଛେଦିଲା ସେ ଏକଲକ୍ଷ ଗଜ କୁମ୍ଭସ୍ଥଳ
ରାଜ୍ୟ ଛାଡ଼ି ପଳାଇଲା ଡରେ ମହୀପାଳ ।
ସେନାବଳୀ ନଗ୍ରେ ଯାଇ ମିଳିଲା ତତ୍ପରେ
ପଳାଇ ପଶିଲା ରାଜା ଡରେ ଯେହ୍ନ ପୁରେ ।
ସେନାବଳୀ ନଗ୍ରେ ବଭ୍ରୁବାହନ ଯେ ରାଜା
ବଡ଼ ଧାର୍ମିକ କରଇ ସେ ହରଙ୍କ ପୂଜା ।
ଆଗ ହୋଇ ସେ କଟକେ ଅଶ୍ୱ ଯାଇଁ ପଶେ
ଗୋଡ଼ାଇ ଯାଇଁ ଅର୍ଜୁନ ପଶେ ତାର ଦେଶେ ।

ସୁଲକ୍ଷଣ ଅଶ୍ୱ ଦେଖି ରାଜା ନେଲା ଧରି
ଥୋଇଲା ଭଣ୍ଡାର ଘରେ ତାକୁ ଯତ୍ନକରି ।
ଅଶ୍ୱ ବୋଇଲା ମୋତେ ତୁ ନ ଧର ହୋ ବାବୁ
ସୁକୁମାର ତନୁ ତୋର ନାଶ କରାଇବୁ ।
ଶୁଣି ବୋଇଲା ସେ ବଭ୍ରୁବାହନ ରାଜନ
ଏହି ହଇଲେକେ ମୋତେ ନାହିଁକେ ସମାନ
ଗଜ ଅଶ୍ୱ ପଦାତି ଯେ ମୋର ଅଛି ଦେଖ
ପାଟ ଅଶ୍ୱ ପାଇଁ ହେଉଥିଲି ମୁଁ ବିମୁଖ ।
ତୋ ପୃଷ୍ଠେ ବସି ହସ୍ତିନା ପୁରକୁ ମୁଁ ଯିବି
ମରଣନ୍ତି କୌରବେ ସେ ରାଜ୍ୟେ ରାଜା ହେବି
ଏତେ ବୋଲି ରାଜା ବହୁ ପ୍ରତିଜ୍ଞା କରନ୍ତେ
ରାଜ୍ୟ ଭିତରେ ପଶନ୍ତେ ଯାଇ ବୀରପାର୍ଥେ ।
ଏକଲକ୍ଷ ଗଜ ପୁଣି ଦେବନଲକ୍ଷ ହୟ
ଅର୍ଜୁନଙ୍କୁ ବେଢ଼ି ଗଲେ ପାଣ୍ଡବଙ୍କ ଚୟ ।
ରାଗେ ନାରାଚ ବନ୍ଧିଲା ପାର୍ଥ ମନଭେଦ
ତେଜ ଯୋଦ୍ଧାମାନ ସବୁ ପକାଇଲା ଛେଦ ।
ସୂଚିମୁନା ନାରାଚେକ ବନ୍ଧେ ମହାବଳୀ
ଗଜକୁମ୍ଭସ୍ଥଳେ ବାଜ ପଡ଼ିଲେ ନିକଳି ।
ଗର୍ଜନ କରି ପଡ଼ିଲେ ଲକ୍ଷେ ମହାଗଜ
ଦେଖି କାହାରି ହୋଇଲା କୋପେ ମହାରାଜ
ଅଶ୍ୱମାନେ ତାର ହୋଇଥିଲେ କେତେ କ୍ଷୟ
ଗଜ ପଦାତି ନିକୋତି ଥିଲା ଧନଞ୍ଜୟ ।
ଅନେକ ସଇନ୍ୟ ଘେନି ସେ ବଭ୍ରୁବାହନ
ଆସନ୍ତେ ପାଣ୍ଡୁପତିକୁ ପେଷିଲା ଅର୍ଜୁନ ।
ଅପାର ସୈନ୍ୟ ପଡ଼ିଲେ ଯହୁଁ ମହୀଲୋଟି
ବଭ୍ରୁବାହନ ନୃପତି କୋପରେ ଉଠି
ବଭ୍ରୁବାହନଙ୍କି ଏକା ଅର୍ଜୁନଙ୍କି ଏକା
ସମରେ ସେ ବେନିଜଣ ଅଟନ୍ତି ଅଶଙ୍କା ।
ବଭ୍ରୁବାହନ ବନ୍ଧିଲା ପନ୍ନଗ ନାରାଚ
ଗରୁଡ଼ ଶରେ କାଟିଲା ସେ ବାଣ ବଳପ୍ର ।
ବଭ୍ରୁବାହନ ବନ୍ଧିଲା ମନ୍ୟୁ ଶର ଧରି
ଜାମ୍ୟଶରେ ସେ ଶରକୁ ଅର୍ଜୁନ ନିବାରି ।
ପୁନରପି ବନ୍ଧିଲା ସେ ଅମୋଘ ଶକତି
ବଜ୍ରଶରେ ସେ ଶରକୁ ଅର୍ଜୁନ ନିପାତି ।
ରାଗେ ଅର୍ଜୁନ ମାଇଲେ ଧରି ଅଗ୍ନି ବାଣ
ମେଘଶରେ ନିବାରିଲା ତା ବଭ୍ରୁବାହନ ।

ପବନଶରେ ମେଘଙ୍କୁ ନିବାରି ଅର୍ଜୁନ
ତାହା ଦେଖି କୋପକଲା ସେ ବଭ୍ରୁବାହନ ।
ଭୁଲଇ ହସ୍ତରେ ଧରି ମାଇଲାକ ଶୂଳେ
ଅର୍ଜୁନ ତା ନିବାରିଲେ ସହସ୍ର କୋଢାଳେ ।
କହନ୍ତ ଅଗସ୍ତି ତୁମ୍ଭେ ଶୁଣ ବୈବସ୍ୱତ
ରଣେ ମହାବୀର ପାର୍ଥ ନୋହିଲା ନିବର୍ତ୍ତି ।
ଧଇଲାକ ନାଗପୁଣ ଶର ସବ୍ୟସାଚୀ
ଦେଖି ସେ ବଭ୍ରୁବାହନ ବ୍ରହ୍ମଶର ଯୋଚି ।
ସେ ବେନି ଶର ଅଟନ୍ତି ପୁଣି ଅପାଲଟ
ରୁଦ୍ର ଇନ୍ଦ୍ର ଚନ୍ଦ୍ର ହେଲେ ହେବ ଶିଳକାଟ ।
ଅର୍ଜୁନ ଭଆଁରି ଆହୋ ନର ନାଗପୁଣ
ଏ ମୁଢ଼ର ଏହିକ୍ଷଣି ସେନକୁ ପରାଣ ।
ବଭ୍ରୁବାହନ ବୋଇଲା ସେ ବ୍ରହ୍ମଶରକୁ
ସତ୍ୱର ଯାଇଣ ମାରିପକାଅ ଏହାକୁ ।
ଏକାବେଳକେ ଛାଡ଼ିଲେ ସେହି ଶର ବେନି
ପଡ଼ିଲେକ ବ୍ରହ୍ମଶର ଯାଏ ଫାଲଗୁନ ।
ବଭ୍ରୁବାହନ ପଡ଼ଇ ନାଗପୁଣ ଶରେ
ଏକାବେଳକେ ଲୋଟିଲେ ଦୁହେଁ ମହୀପରେ
ଏ ବଧି ହୋଇଲେ ତହିଁ ଦୁହେଁ ଯେ ବିନାଶ
ଧନୁ ଯାଇଣ ମକର ହୋଇଲା ପ୍ରବେଶ ।
ମହୀ ମଣ୍ଡଳେ ଥିଲେ ଯେ ଲକ୍ଷେକ ନୃପତି
ସମସ୍ତେ ଇନ୍ଦ୍ରପ୍ରସ୍ଥରେ ପ୍ରବେଶ ହୁଅନ୍ତି ।
ଯାଗେ ବସିଲେ ଯୁଧିଷ୍ଠି ମୁନିପାଦେ କରି
ବ୍ୟାସ ବଶିଷ୍ଠ ଅଗସ୍ତି ଋଷି ଆଦିକରି ।
ଯୁଧିଷ୍ଠି ବୋଇଲେ ଆରେ ଶୁଣ ସହଦେବ
ହୃଦୟ ବିକଳ ମୋର ବାହୁଳିତ ସ୍ୱବ ।
ଉତ୍ତର ଦିଗ ଅନ୍ଧାରମୟ ମୋତେ ଦିଶେ
କିବା ବାବୁ କାଳଶେଷ ହୋଇ ମୋର ଆସେ
ସହଦେବ ବୋଲେ ଦେବ ହୋଇଲା ବିପଦ
ଅର୍ଜୁନ ଠାକୁରଙ୍କୁ ଯେ ପଡ଼ିଲା ପ୍ରମାଦ ।
ସେନାବଳୀ ନଗ୍ରେ ବଭ୍ରୁବାହନ ଯେ ରାୟ
ଦୁହେଁ ପଡ଼ିଲେ ସମରେ ଦୁହେଁ ଯେ କ୍ଷତ୍ରିୟ ।
ଶୁଣିଣ ବିସ୍ମୟ ଧର୍ମରାଜନ ଯୁଧିଷ୍ଠି
ପୃଥ୍ୱୀରେ ଜନମି ଏଡ଼େ ବଳବନ୍ତା କେଟି ।
ସହଦେବ ବୋଇଲେ ହୋ ଶୁଣ ରାଜକଥା
ଯେତେବେଳେ ବନେ ଗଲେ ପାର୍ଥ ବଳବନ୍ତା ।
ଖାଣ୍ଡବ ଦହନ କଲେ ଯେଉଁ ବନବାସେ
ଶରଣ ପଶିଲା ଶାଢଧନୁ କୃଷ୍ଣବାସେ ।
ସେ ବନ ଥିଲେ ସେ ପାର୍ଥ କି ଅନ୍ୟକ ବନେ
ତିନ ବରଷ ରହିଲେ ହିଙ୍ଗୁଳା ଦର୍ଶନେ ।
ଚିତ୍ରାଙ୍କୁର ବୋଲି ତହିଁ ଶବର ନୃପତି
ମଣିପୁର ଦେଶେ ସେହି ଅଟେ ଅଧିପତି ।
ତାହାଙ୍କର ରାଜ୍ୟ ବନେ ଯୋନ ମରହଟ୍ଟ
ପଞ୍ଚସର ବେଳ ଆସି ରଙ୍ଗିଲା ତା ରାଷ୍ଟ୍ର ।
ଅର୍ଜୁନ ଯେ ରହିଅଛି ହିଙ୍ଗୁଳାର ପାଶେ
ଚିତ୍ରାଙ୍କର ରାଜା ଆସି ଶରଣ ଯେ ପଶେ ।
ଚିତ୍ରାଙ୍କରକୁ ଭେଟନ୍ତେ ଯାଇଁ ମରହଟ୍ଟୀ
ପାଞ୍ଚଘଡ଼ି ସମରେ ଯେ ପଡ଼ିଲା ତା ଥାଟ ।
ଚିତ୍ରାଙ୍କର ରାଜାଙ୍କୁ ସେ ଦେଲେ ସଦଗତି
ଦେଖିକରି ଆନନ୍ଦିତ ହେଲା ତାର ମତି ।
ହିଙ୍ଗୁଳାକ୍ଷୀ ବୋଲି ଜାଣ ତାହାର ପ୍ରମଦା
ତାର ଦୁହିତା ଉଲୂପୀ ପୁଣି ଚିତ୍ରାଙ୍ଗଦା ।
ଅନେକ ବିନୟୀ ହୋଇ ପାର୍ଥକୁ ସେ ନେଲା
ଉଲୂପୀ କନ୍ୟାକୁ ଆଣି ବିଭା କରାଇଲା ।
ଚିତ୍ରାଙ୍ଗଦା କନ୍ୟାକୁ ସେ ଯଉତୁକ ଦେଲା
ତିନିବରଷ ତା ରାଜ୍ୟେ ପାର୍ଥ ଯେ ରହିଲା ।
ସେ ଉଲୂପୀ କନ୍ୟାଗର୍ଭେ ରହିଲା ସନ୍ତାନ
ବେନିମାସ ଗର୍ଭ ତାର ଅଇଲେ ଅର୍ଜୁନ ।
ସୁଭଦ୍ରାକୁ ଦ୍ୱାରକାରେ ପୁଣ ବିଭା ହେଲେ
ସେ ବେନି କନ୍ୟା ପିତାର ଘରେ ଯେ ରହିଲେ
ଉଲୂପୀ ଗର୍ଭରୁ ଜାତ ହେଲା ଯେ ନନ୍ଦନ
ସେ ପୁତ୍ରର ନାମ ଦେଲେ ଶ୍ରୀ ବଭ୍ରୁବାହନ ।
ଯୁଧିଷ୍ଠିଙ୍କ ଆଗେ ସହଦେବ ଯେ କହଇ
ପିତା ପୁତ୍ର ବୋଲି ଦେବ ନ ଜାଣନ୍ତି କେହି ।
ସାମାନ୍ୟ ନୁହନ୍ତି ସେ ଯେ ବେନି ସମକକ୍ଷ
ତେଣୁକରି ତା ସମରେ ପଡ଼ିଲେ ବିବସ୍ତ୍ର ।
ବଡ଼ ବଳବନ୍ତ ଅଟେ ସେ ବଭ୍ରୁବାହନ
ଲୋକାଲୋକ ପର୍ବତରେ ତାହାର ଆସ୍ଥାନ ।
କଟକର ନାମ ସେନାବଳୀ ଯେ ଅଟଇ
ବଡ଼ ସମାରୋହେ ରାଜା ସେ ରାଜ୍ୟ ପାଳଇ ।
କିର୍ଣ୍ଣାଟ ରାଜନ ପାର୍ଥ ସଙ୍ଗେ ହାରିଗଲା
ପଳାଇ ବଭ୍ରୁବାହନେ ଶରଣ ପଶିଲା ।

ତାହାର ନିମନ୍ତେ ପିତା ପୁତ୍ର ଯୁଦ୍ଧ କଲେ
ଏକା ଏକା ଶରେ ଦୁହେଁଯାକ ସେ ପଡ଼ିଲେ ।
ବ୍ୟାସ ବୋଇଲେ ହେ ଯାଗ କରୁଥାଅ ତୁମ୍ଭେ
ସେ ରଣସ୍ଥାନକୁ ଏବେ ଯାଉଅଛୁ ଆମ୍ଭେ ।
ଯୁଧିଷ୍ଠି ବୋଇଲେ ଅଛି ଲକ୍ଷେକ ଯୋଜନ
ତୁମ୍ଭେ ସେଠାରେ ମିଳିବ ଯାଇଁ କେତେଦିନେ
ଏହାଶୁଣି ଦୁଃଖଯାତ ହୁଏ ମୋର ମନେ
ସତେ କି ହୋଇବ ଆଉ ଦେଖିବ ନୟନେ ।
ବ୍ୟାସ ବୋଇଲେ କି ଆଉ ନକର ଭାରୁଣ୍ୟ
ଆମ୍ଭେ ପ୍ରବେଶ ହୋଇବୁ ଯାଇଁ ଏକ୍ଷଣ ।
ଜୟ ବେଦବ୍ୟାସ ତବ ମହିମା ଅନନ୍ତ
ପିତା ପରାଶର ଋଷି କୈବର୍ତ୍ତୀ ତୋ ମାତ ।
ଅନୁବ୍ରତେ ଗାଅ ବିଷ୍ଣୁ ନାଥର ମହିମା
ଜାଣି ନ ପାରନ୍ତି ଯାକୁ ଇନ୍ଦ୍ର ଆଦି ବ୍ରହ୍ମା ।
ମନଅନୁସାରେ ବଶ ଏ ତୁମ୍ଭର କାୟ
କୋଟି ବ୍ରହ୍ମାଣ୍ଡ କ୍ଷଣକେ ଭ୍ରମ ମହାଶୟ ।
ଜାଣି ନପାରୁ ଯେ ମନପବନ ଆକାଶ
ସ୍ୱର୍ଗ ପାତାଳ କେ ପୁଣି ସ୍ଥିର କି ଦିବସ ।
ବିଧି ତୋ ମହିମା କରି ନ ପାରଇ ଶେଷ
କହିବି ମୁଁ ତାହା କେତେ କରଣ ଅଭ୍ୟାସ
ସେ ବ୍ୟାସଦେବ ଚରଣେ ଜନ୍ମେ ଜନ୍ମେ ସେବ
ପ୍ରଣତି କରେ ଶାରଳାଦାସ ନାମେ କବି ।
ଯୁଧିଷ୍ଠିର ସଙ୍ଗେ କଥା କହୁଥିଲେ ଶଧେ
ଅଶୀ ସହସ୍ର ଯୋଜନ ଗଲେ ନିଶାଅର୍ଦ୍ଧେ ।
କ୍ଷଣକେ ପ୍ରବେଶ ଅଶୀସହସ୍ର ଯୋଜନ
ଦେଖିଲେ ଅଛନ୍ତି ବଭ୍ରୁବାହନ ଅର୍ଜୁନ ।
ନାତି ଅଣନାତି ବେନଛନ୍ତି ଏକଠାବ
ଅର୍ଜୁନଙ୍କୁ କୋଳକଲେ ଯାଇ ମୁନିଦେବ ।
ଶସ୍ତ୍ରର ଜ୍ୱାଳାରେ ପାର୍ଥ ମୋହେ ପଡ଼ିଥିଲେ
ବ୍ୟାସଙ୍କ ସ୍ପର୍ଶେ ଚେତନା ପାଇଣ ଉଠିଲେ ।
କମଣ୍ଡଳୁ ପାଣି ସିଞ୍ଚି ବ୍ୟନ୍ତେ ବ୍ରହ୍ମସୁତ
ସଚେତ ହୋଇ ବସିଲେ ନାତି ଅଣନାତି ।
ବ୍ୟାସଙ୍କ ମୁଖକୁ ଚାହିଁ ବସିଲେ ସେ ଉଠି
ଚରଣ ଧରି ପ୍ରଣାମ କରଇ କିରୀଟୀ ।
ବ୍ୟାସ ବସାଇଲେ ପାଶେ ନେଇ କୋଳକରି
କି କାରଣେ ଅଚେତନ ହୋଇଲୁ ପଚ୍ଛରି ।

ପୁଣି ବୋଇଲେ ଯେ ତୋର କରି ଏହୋ ପାର୍ଥ
ଦେଖ ଏ ବଭ୍ରୁବାହନ ଅଟଇ ତୋର ସୁତ ।
ଚିତ୍ରାଙ୍କୁର ରାଜାର ଯେ ହେନ କନ୍ୟା ଥିଲେ
ବନବାସ କରିଥିଲୁ ତୁହି ଯେତେବେଳେ ।
ଚିତ୍ରାଙ୍ଗଦା ଉଲୁପୀକୁ ଭଜି ଯେ ହୋଇଲୁ
ଗର୍ଭର ହି ଷାଣ୍ମାସେ ଗ୍ରନ୍ଥି ପକାଇଲୁ ।
ତୋର ବୀର୍ଯ୍ୟ ଉଲୁପୀର ଗର୍ଭେ ହେଲା ଜାତ
ବଭ୍ରୁବାହନ ତା ନାମ ଅଟଇ ତୋର ସୁତ ।
ରାଜା ହୋଇ ପାଳୁଅଛି ହିଙ୍ଗୁଳା ପ୍ରସନ୍ନେ
ଏହାକୁ ଜିଣନ୍ତା କେହି ନାହିଁ ତ୍ରିଭୁବନେ ।
ଅର୍ଜୁନ ବୋଇଲେ ନସ୍ତରଲ ନସ୍ତବଳ
ଅନ୍ୟର ହାତରେ ମୁହିଁ ଦୁଷିତ ନୋହିଲି ।
ମୋହର ପୁତ୍ର ହାତେ ମୁହିଁ ପରାଭବ ପାଇଲି
ତହୁଁ ବ୍ୟାସ କୁମରକୁ ଧଇଲେ ଯେ ତୋଳି
ମୃତ ସଞ୍ଜୀବନୀ ମହାମନ୍ତ୍ର କର୍ଣ୍ଣେ ଦେଲେ
ତହୁଁ ସେ ବଭ୍ରୁବାହନ ଉଠିଣ ବସିଲେ ।
ପୁତ୍ରକୁ ଅର୍ଜୁନ ନେଇ ବସାଇଲେ କୋଳେ
ଅନେକ ପୌରୁଷ କରି କହିଲେ ନ ଭୋଳେ ।
ଆଗହୁଁ ମୁଁ ଜାଣିଥାନ୍ତି ଯେବେ ଆରେ ପୁତ୍ର
ଏତେ କଷ୍ଟ କିପାଇଁ କରନ୍ତି ନା ଭୂତ
ବ୍ୟାସ ବୋଇଲେ କି ଯେବେ ଜାଣନ୍ତ ଆଗହୁଁ
ଏତେକାଳ ଏହିପୁଣି କରିଥାନ୍ତା କାହୁଁ ।
ପୃଥ୍ୱୀର ଭିତରେ ଏହି ଶକତା କଳତା
ଶ୍ୱେତକୁମାର ତୁଳେ ଏ ପ୍ରଥମେ ପଡ଼ନ୍ତା ।
ରଥ ଅଶ୍ୱ ନର ଗଜ ସେନାପତି ପୁର
ହିଙ୍ଗୁଳା ପ୍ରସନ୍ନେ ଯୋଗ କରେ ତୋ କୁମର
ଶୁଣି ସାନନ୍ଦ ହୋଇଲା ସେ ବଭ୍ରୁ ବାହନ
କରାଇଲା ଆଣି କାନ୍ତି ରାଜାକୁ ଦର୍ଶନ ।
ଶତ ସହସ୍ର ସେ ପାଦେ ଦଣ୍ଡବତ କରି
ହେନ ରାଜାଏ ଶୁତିଲେ ପାର୍ଥ ପାଦ ଧରି ।
ରୁହାଇଲା ପିତାକୁ ତା ରାଜ୍ୟ ଦବା ତନ
ପୁତ୍ରକୁ ତା ରାଜ୍ୟ ଦେଇ ଗଲା ସୈନ୍ୟବେନି
ବ୍ୟାସ ଅର୍ଜୁନ ଚଳିଲେ ସେଠାରୁ ବହନ
ଭୁବନସ୍ଥ ପିଠିରେ ଯେ ବିଜୟ ଅର୍ଜୁନ ।
ଘଡ଼ିକ ମଧ୍ୟେ ଅଇଲେସହସ୍ର ଯୋଜନ
ପ୍ରବେଶ ହୋଇଲେ ଇନ୍ଦ୍ରପ୍ରସ୍ଥ ରାଜ୍ୟ ପୁଣ ।

ଅର୍ଜ୍ଜୁନ ଯେ ବିଜେ କଲେ ଦ୍ୱାରକାଭୁବନେ
ନିମନ୍ତ୍ରଣ ଦେଲେ ରାମକୃଷ୍ଣ ସନ୍ନିଧାନେ ।
ଯୁଧିଷ୍ଠିର ଦେବଙ୍କ ଅଶ୍ୱମେଧ ଯାଗ ଶୁଣି
ସାନନ୍ଦ ହୋଇଲେ ଚକ୍ରଧର ହଳପାଣି ।
ଉଗ୍ରସେନ ସନ୍ନିଧରେ ସାଇଙ୍କଣ ଘେନି
ରାମ କୃଷ୍ଣ ବିଜେ କଲେ ଚଢ଼ି ରଥ ବେନି ।
ଦ୍ୱାରକାଭୁବନୁ ସଙ୍ଗେ ହୋଇଗଲେ ସଜ
ଅର୍ଜ୍ଜୁନଙ୍କୁ ଘେନି ମହାନନ୍ଦ ଦେବରାଜ ।
ଜୟ ହୁ ଜୟ ହୁ ଦେବ ଅନାଦିନିଦାନ
ଜୟ ହୁ ଜୟ ହୁ ଦେବ କଂସନିସୂଦନ ।
ଜୟ ହୁ ଜୟ ହୁ ଦେବ ନନ୍ଦ ଘରେ ରହି
ଜୟ ହୁ ଜୟ ହୁ ଦେବ ଗୋପୀମନ ମୋହି
ଜୟ ହୁ ଜୟ ହୁ ଦେବ ଜରାସନ୍ଧ ଧାପେ
ମଥୁରା ଛାଡ଼ିଲ ପୁଣି ନ ରହିଲ ଗୋପେ ।
ଦ୍ୱାରକାରେ ପୁର କରି ଦୁଷ୍ଟଙ୍କ ସଂହାର
ଶାରଳା ଦାସ ଚରଣେ ଶରଣ ତୋହର ।

---

## ମୃଡ଼ାସୁର ବଧ

ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ମୃଡ଼ାସୁର ହୋଇ ଜାଣ ବାଣାସୁର ସୂନୁ ।
ମନ୍ତ୍ରୀ ଏକ ଅଛି ତାର ଶଢାସୁର ବୋଲି
ଛଳରେ ସେ ଜମ୍ବୁଦ୍ୱୀପ ପାରଇ ଯେ ବୁଲି ।
ମନ୍ତ୍ରୀ ଜଣାଇଲା ଶୁଣ ତୁହେ ଦଣ୍ଡଧାରି
ଆମ୍ଭେ ବୁଲି ଯିବା ଏବେ ଶୋଣିତ ନଗରୀ ।
କୃଷ୍ଣଙ୍କର ତେଜ ଏବେ ହୋଇଲାଣି ହତ
ଅଷ୍ଟବକ୍ର ଶାପେ ସେହୁ ହେଲେ ବଡ ଭୀତ ।
ମନ୍ତ୍ରୀ ବଚନେ ଚଳଇ ଦୈତ୍ୟ ଦଣ୍ଡଧାରୀ
ସରସ୍ୱତୀ ତୀରେ ଥାଇ ତାହାର ନଗର ।
ଆସନ୍ତେ ମିଳିଲା ଯାଇଁ ଋଷ୍ୟମୂକ ବନେ
ଯାଗ ଗନ୍ଧ ଆମୋଦଇ ଆକାଶ ଭୁବନେ ।
• ଦୈତ୍ୟ ପଚାରଇ ମନ୍ତ୍ରୀ ଗନ୍ଧାଉଛି କିସ
ମନ୍ତ୍ରୀ ଉତ୍ତର କହଇ ଶୁଣ ନରଈଶ ।
ହତ୍ୟା ଦୋଷ ନିବାରଣ ପାଇଁ ପଣ୍ଡୁସୁତେ
ଅଶ୍ୱମେଧ ଯାଗ କରୁଛନ୍ତି ଶାସ୍ତ୍ରମତେ
କରିଛନ୍ତି ସମୁଦାୟ ରାଜାଙ୍କୁ ବରଣ
ଶୁଣି ମୃଡ଼ାସୁର ବୋଲେ ମୁଁ ଅଟେ ରାଜନ ।
ମୋତେ ବରଣ ନ କଲେ କେବଣ କାରଣେ
ଅସୁର ବୋଲଣ ସେହୁ କରନ୍ତୁ ଏସନେ ।
ମୃଡ଼ାସୁର ବୋଇଲା ତ ଜାଣ ମୋର ବଳ
ମାରିବି ମୁଁ ପାଣ୍ଡବଙ୍କ ଭାଙ୍ଗି ଯାଗଶାଳ ।
କୋପେ ସେ ନଗ ଅଇଲା ସାଜି ଯମଦଣ୍ଡ
ମହୀରେ ଚଳନ୍ତେ ପାଦେ କମ୍ପିଲା ବ୍ରହ୍ମାଣ୍ଡ ।
ବାହ୍ଲୀକ ଅଶ୍ୱମେଧ ଯାଗେ ମୃଡ଼ାସୁର
ଶୁଣିକରି ରାଜାମାନେ ହେଲେ ଥରହର ।
ଭୀମ ବୋଇଲେ ନ କର ତୁମ୍ଭେ କେହି ଭୟ
ମୁହିଁ ସମରେ ମାରିବି ମୃଡ଼ାସୁର ରାୟ ।
ଏତେ ବୋଲି ସେ ପାଣ୍ଡୁକୁଳ ସାରମଣି
ନକୁଳ ସହଦେବଙ୍କୁ ସଙ୍ଗତରେ ଘେନି ।
ମୃଡ଼ାସୁର ରହିଥିଲା ଯମୁନାର କୂଳେ
ତହିଁ ପାଣ୍ଡବେ ପ୍ରବେଶ କଟୀକଟ ତଳେ ।
ରହନ୍ତି ଭୋଜନେ ଲାଗିଛନ୍ତି ଦୈତ୍ୟବଳ
ଭୋଜନ ଶେଷେ ବେଢ଼ିବେ ଆସି ଯାଗଶାଳ ।
ସର୍ବଙ୍କ ମନ୍ତ୍ରୀ ତାହାର ଜଣାଇଲା ତାକୁ
ଏଥିଠାରେ ତ ଦେଖିବା ଆମ୍ଭେ ପାଣ୍ଡବଙ୍କୁ ।
ଦୈତ୍ୟ ବୋଲେ ଶ୍ରୀକୃଷ୍ଣଙ୍କ ଭୟ କରୁ ସିନା
ପାଣ୍ଡବଙ୍କୁ ହଜାଇବି କରିଦେଇ ଚୂନା ।
ଏମନ୍ତ ବୋଲିଣ ଦାନବେ ଉଠେ ରଡ଼ିଛାଡ଼ି
ଅଶୀଲକ୍ଷ ଯୋଦ୍ଧା ଘେନି ଚଳିଲେ ସଜାଡ଼ି ।
ଦୈତ୍ୟଙ୍କର ରଡ଼ ଶୁଣି ବୀରବର ଭୀମ
କାଳଦଣ୍ଡ ଘେନି ହେଲେ କାଳ କି ବା ଯମ ।
ମନ୍ଦର ପର୍ବତ ଜାଣି ଭୀମଙ୍କର କାୟ
ନୟନ ବେନି ଭ୍ରମଇ କାଳଚକ୍ର ପ୍ରାୟ ।
ହେ ରେ ରେ କାର ଶବଦରେ ଉଠଇ ମାରୁତ
ନକୁଳ ଯେ ସହଦେବ ପାର୍ଶ୍ୱେ ଅଛନ୍ତି ।
ପଦାତି ଅଶ୍ୱ ବ ରଥ ଅସୁରଙ୍କ ସଙ୍ଗେ
ଆରମ୍ଭେ ପାଣ୍ଡବେ ଯୁଦ୍ଧ କଲେ ଯାଇଁ ଆଗେ
ଗଦା ମୁଦ୍ଗର ନେଇ ପିଟନ୍ତି ବେ ବେଗେ
ହାଣନ୍ତି ଯୋଦ୍ଧାଏ ଏକ ଆରେକହିଁ ରଙ୍ଗେ ।
ଦଣ୍ଡିଲେ ରଣରଙ୍ଗ ଅସୁର ସଇନେ
ଭୀମ ପ୍ରହାରେ ପଡ଼ିଲେ ପର୍ବତ ସମାନେ ।
ଲୋହପର୍ବତକୁ ବନେ ଉପାଡ଼ିଣ ଭୀମ
ଧାମଇ ରାହୁର ପ୍ରାୟ ରଣରଙ୍ଗା ନାମ ।

ଗଦା କୁନ୍ତ ମୁଦୁଗର ହେଳ ତହ ଆଣି
ହନନ୍ତି ଯୋଦ୍ଧାଏ ଏକୁ ଆରେକ ଯେ ଟାଣି ।
ଦେବଶସ୍ତ୍ରକୁ ତ ଭୀମ ନ କରଇ ଭୟ
ବଜ୍ର ସମ ତ ଅଟଇ ତାହାର ଯେ କାୟ ।
ଅନେକ ଅସୁର ସୈନ୍ୟ ପଡ଼ିଲେକ ରଣ
ସମରେ ନିଧନ ଏକା କଲା ଭୀମସେନ ।
ଭୀମର ଘାତେ ସନ୍ତୁଁ ପଡ଼ିଲେ ସଇନ
ସ୍ବର ପ୍ରାପ୍ତ ଉଠିଲେ ଉଣେ ଜଣ ତନ ।
ସୈନ୍ୟ ଭଗ୍ନ ଦେଖି ସେହୁ ମୁଢ଼ାସୁର ସପ୍ତ
ଯମଦଣ୍ଡ କାଳଦଣ୍ଡ ନରଦଣ୍ଡ ନୟ ।
ଦେବଦଳନକୁ ଘେନ ସ୍ୱର୍ଣ୍ଣ ସେନାପତି
ସ୍ୱରଙ୍କର ତୁଲେ ସ୍ୱର ଅର୍ବୁଦେକ ରଥୀ ।
ଲୁହା ଧନୁ ଏକ ଏକ ଧରି ଶର ବନ୍ଧ
ସମରେ ସେ ଅର୍ବୁଦେକ ଦୈତ୍ୟ ମହାଯୋଧୀ
କଟାଳଲା ଆସି ଯମଦଣ୍ଡ ସେନାପତି
ଶତେକ ନୃପତି ସେହୁ ବାନ୍ଧିଲାକ ଧାଡି ।
ତାହାର ହସ୍ତର ବେଗ ଦେଖି ତ ନ ପାରି
ଏମନ୍ତେ ବାନ୍ଧିଲା ସେହୁ ପୁଣି ବେଳ ସ୍ୱର ।
ବାମଅଙ୍ଗ ପାତି ତାହା ଭୀମସେନ ସହି
ଅଗ୍ନି ଝଲକଇ ପଡ଼ି ଭୀମସେନ ଦେହି ।
ବାମଅଙ୍ଗ ପାତି ସବୁ ସହିଲା ଗରଜ
ଯମଦଣ୍ଡ ଧନୁକୁ ସେ ପକାଇଲା ଭାଜ ।
ଗଦା ବୁଲାଇ ପିଟିଲା ଭୀମ ବେଗେ ଉଠ
ପଡ଼ିଲା ସେ ଯମଦଣ୍ଡ ମହୀତଳେ ଲୋଟି ।
କାଳଦଣ୍ଡକୁ ଧଇଲା କୋପେ ବେନିକରେ
ବୁଲାଇ ପିଟିଲା ନରଦଣ୍ଡର ଉପରେ ।
ଦୁରନ୍ତକ ଅସୁର ସେ ଉଣେ ମହାବଳୀ
ବଜ୍ର ପରତାନ ପ୍ରାପ୍ତେ ଉଠିଲେ ସେ ଜଳ ।
ଯମଦଣ୍ଡ କାଳଦଣ୍ଡ ନରଦଣ୍ଡ ତିନ
ପଡ଼ିଲେ ଭୀମ ପ୍ରହାରେ କାମୁଡ଼ି ମେଦିନୀ ।
ତିନଙ୍କ ପଡ଼ିବା ଦେଖି ଭାଙ୍ଗିଲେ ସଇନ
ଧାମନ୍ତି ତିନ ପାଣ୍ଡବେ ପବନକୁ ଜିଣି ।
ଅସୁର ସଇନ ଯେତେ ପ୍ରହାରନ୍ତି ବାଣ
ଭୀମ ବଜ୍ର ଅଙ୍ଗେ ପଡ଼ି ହୋଇଗଲା ଚୂର୍ଣ୍ଣ ।
ନକୁଳ ସହଦେବଙ୍କୁ ହାନନ୍ତି ଯେ ବାଣ
ପର୍ବତ ସମାନ ତାହା ଉଗାଳନ୍ତି ଜାଣ ।

ତିନିଦୈତ୍ୟଙ୍କ ସଙ୍ଗରେ ଯେତେ ଯୋଦ୍ଧା ଥିଲେ
ପଞ୍ଚକ୍ଷୋଣୀ ଦଉହଣ ସମସ୍ତେ ପଡ଼ିଲେ ।
ସୈନ୍ୟ ହତ ଦେଖି ଦେବଦଳନ ଅସୁର
ବହୁସୈନ୍ୟ ଘେନି ଉଗାଳିଲାକ ସତ୍ୱର ।
ନକୁଳ ସହଦେବ ଯେ ଭୀମସେନ ତିନ
ଦେଖିଲେ ସେ ଉଗାଳନ୍ତି ଅନେକ ସଇନ ।
ଅସୁର ବଳଙ୍କୁ ଧରି ଭୂମିରେ କଚାଡ଼ି
ପିଟନ୍ତି ସେ ଶାଳତରୁମାନଙ୍କୁ ଉପାଡ଼ି ।
ଅନେକସୈନ୍ୟ ବେଢ଼ିଲେ କୋପେ ପୁଣି ଆସି
ସ୍ତୁଗଳଙ୍କୁ ବାଡପର ଭୀମ ସବୁ ଧ୍ୱଂସି ।
ଭୀମ ବଧାରେ ପଡ଼ିଲେ ଉଣେ ଦୈତ୍ୟବଳ
ଦଣ୍ଡି ଭଗ୍ନ ହୋଇ ଧାଏଁ ରଷ କାଳାନଳ ।
ଦୈତ୍ୟ ସେନାପତି ଅଟଇ ଯେ ଦେବଦଳନ
ଭୀମର ସଙ୍ଗତେ ଆସି ଆରମ୍ଭିଲା ରଣ ।
ଲୁହା ବେନି ଗଦା ଶତ ଶତ ଭାର ତୁଲେ
ଭୀମ ଉପରେ ପ୍ରହାର କଲା ମହାମଲ୍ଲେ ।
ମାରୁତି ଆପଣା ଗଦା ଧଇଲାକ ଆଡ଼
ଚୂର୍ଣ୍ଣ ହୋଇଗଲା ଦୈତ୍ୟ ଗଦା ତହିଁ ପଡ଼ ।
ପୁଣିହିଁ ଗଦାଏ ମାରେ କୋପେ କଉଣପ
ଗଦା ବାଧାରେ ଭାଙ୍ଗିଲା ବୃକୋଦର ଦର୍ପ ।
ଭୀମ ପଡ଼ନ୍ତେ ନକୁଳ ସହଦେବ ବେନି,
ସମର କରନ୍ତି ହାତେ କୁନ୍ତ ଗଦା ଘେନି ।
ପୁଣି ସେ ଦଇତ୍ୟ ଲୁହା ଗଦା ଘେନି ଉଠି
ନକୁଳ ଉପରେ ନେଇ କୋପେ ତାହା ପିଟି
ଅସୁର ପ୍ରଘାତ ପାଇ ପଡ଼ିଲା ନକୁଳ
ସହଦେବଙ୍କୁ ପ୍ରହାର କଲା ମହାବଳ ।
ହୃଦେ ବାଜି ଗଦାବର ବହିଲା ଶୋଣିତ
ମନ୍ତ୍ରୀ ଚୂଡ଼ାମଣି ପଡ଼ି ହୋଇଲା ଅଚେତ ।
ତିନିଜଣ ଅଚେତନ ରଣ ମଧ୍ୟେ ପଡ଼ି
ଧାମନ୍ତି ଅସୁରେ ଯାଗଶାଳାକୁ ଯେ ବେଢ଼ି ।
ଅନେକ ରାଜାଏ ଥିଲେ ସେହି ଇନ୍ଦ୍ରପ୍ରସ୍ଥେ
ପଳାଇଲେ ଅସୁରଙ୍କ ଭୟେ ଇତସ୍ତତେ ।
ଋଷିଗଣମାନେ ଭୟେ ଗଲେ ଅନ୍ତର୍ଦ୍ଧାନେ
ଯାଗଶାଳରେ ପଶିଲେ କୋପେ ଦୈତ୍ୟମାନେ
ଅନେକ ଧନଭଣ୍ଡାର ନେଲେ ଜୁରକରି
ଖାଇଲେକ ବାଳଗିଲାମାନଙ୍କୁ ସେ ପୋଡ଼ି ।

ରନ୍ଧଣା ଯୋଗାଡ଼ ଯେତେ ଥିଲା ଯାଗ ଶାଳେ
ସମସ୍ତ ଆହାର କଲେ ଦୈତ୍ୟ କୁତୂହଳେ ।
ପୋଲୁହ ଚାଉଳ ନାନାବିଧ ମାଂସମାନ
କେବଣ ଦ୍ରବ୍ୟ ନ ଥାଇ ଯାଗର ବିଧାନ ।
ସମସ୍ତ ଆହାର କଲେ ଅସୁର ନର୍ଘ୍ୟକେ
ଯୁଧିଷ୍ଠିର ଧରନ୍ତେ ଯେ ଗଲେ ଯାଜନକେ ।
ସବୁ ରାଜ୍ୟ ଭାଙ୍ଗି ଜୁରୁକଲେ କଉଣସେ
ଶୋଣିତ ପୁରକୁ ଚଳିଗଲେ ମହାକୋପେ ।
ଦ୍ୱାରକାରୁ ଆସୁଥିଲେ ରାମ ଭଗବାନ
ନିକଟେ ଦେଖିଲେ ଯିବା ଅସୁର ସଇନ୍ୟ ।
ଏକାଳେ ଆସି ବିଜୟେ ନାରଦ ମହର୍ଷି
ଶଙ୍ଖଦେବତା ତାହାଙ୍କୁ ଦେଲେ ବେଗେପେଷି
ନାରଦ ମହର୍ଷି ତହୁଁ ଗଲେକ ବହନ
ବାରତା କହିଲେ ଯାଇ କୃଷ୍ଣ ସନ୍ନିଧାନ ।
ବାସୁଦେବ କି ନ ଜାଣୁ ଯାଇ ଦେଉଁକାର୍ଯ୍ୟ
ମୁଡ଼ା ଅସୁର ବାହିଲା ଇନ୍ଦ୍ରପ୍ରସ୍ଥ ରାଜ୍ୟ ।
ଭୀମସେନ ନକୁଳ ଯେ ସହଦେବ ତିନି
ପଡ଼ିଲେ ସମରେ ଘେନି ଅନେକ ସଇନ ।
ତିନିହେଁ ପଡ଼ିଲେ ରଣେ ଯମୁନାର କୂଳେ
ଧାଇଁ ଯାଇଁ ଦୈତ୍ୟବଳ ପଶି ଯାଗଶାଳେ ।
ଧନଭଣ୍ଡାର ଅନେକ ନେଲେ ଜୁରକରି
ଖାଇଲେ ସେ କାଳଖିଆ ଋଷିମାନ ପୋଡ଼ି
ରନ୍ଧଣା ଯୋଗାଡ଼ମାନ ଖାଇଲେ ସମସ୍ତ
ଧଇ ନଅନ୍ତ ଯୁଧିଷ୍ଠ ଯାଙ୍କି କ ସନ୍ତତ ।
ଡରେ ଆସି ନ ପାରିଲେ ଦେବ ସୁରପତି
ରାମ ସ୍ମୁରେ କହନ୍ତେ ସେ ନାରଦ ଯତି ।
ରୋହିଣୀ ନନ୍ଦନ ଅତି ବଳେ ମହାବଳୀ
ରଣଗୋଳ ଧନ୍ଦଳକୁ ବଳେ କଲେ ହଳୀ ।
ତ୍ରୈଲୋକ୍ୟ ନ ବର୍ତ୍ତଇ ଯେଉଁ ରାମ କୋପେ
କାଳାନ୍ତକ ରୂପ ଦେଖି ଡରିଲେ କୌଣପେ ।
ବଜ୍ରଘାତେ ଯେସନେ ଲୋଟନ୍ତି ପର୍ବତେ
ପଡ଼ିଲେ ଦାନବ ବଳରାମ ଅସ୍ତ୍ରଘାତେ ।
ଦେବଦଳନ ନାମରେ ଯେବଣ ଅସୁର
ଅର୍ଜ୍ଜୁନ ସଙ୍ଗେ ସମର ତାର ଗୁରୁତର ।
ଅସୁର ଦୁରନ୍ତ ଯୁଦ୍ଧେ ନୁହନ୍ତି ତ ଊଣା
ଦେବଗନ୍ଧର୍ବେ ନ ଯାଇ ଯାହାଙ୍କ ଗଣନା ।
ପ୍ରବଳ ହୋଇ ଉଠିଲା ପୁଣି ରଣରଙ୍ଗ
ନାରାଚ ବିନ୍ଧୁ ଅଦୃଶ୍ୟ ଗଗନର ମାର୍ଗ ।
ଅର୍ଜ୍ଜୁନ ବିନ୍ଧିଲା କୋପେ ଅମୋଘ ଶକତ
କାଟି ପକାଇଲା ଦୈତ୍ୟ ମୁଣ୍ଡକୁ ବିକୋତ ।
ଦେବଦଳନ ହୋଇଲା ରଣେ ଯହୁଁ ବଧ
ସାଧୁ ସାଧୁ କଲେ ଉର୍ଦ୍ଧ୍ୱ ଆକାଶେ ବିବୁଧ ।
ସେନାପତି ପଡ଼ନ୍ତେ ଯେ ଭାଙ୍ଗିଲେ ସଇନ
ସମରେ ଘୋଟି ବିନ୍ଧଇ ପାର୍ଥ ଫାଲଗୁନ ।
ନାରାଚ ଗୋଟିକେ କୋଟି ଅସୁର ଯେ ପଡ଼ି
ଯେସନେକ ବାତଘାତେ ପକ୍ୱ ଫଳ ଝଡ଼ି ।
ସଇନଙ୍କୁ ନିଶୋଧନ କରି ଫାଲଗୁନ
ଯାଜ୍ଞ କମାନଙ୍କ ମୂଳେ ଯୁଧିଷ୍ଠିଙ୍କି ଘେନ ।
ଅସୁର ପଡ଼ନ୍ତେ ତାଙ୍କୁ ଆଣି ଧନଞ୍ଜୟ
ନନ୍ଦଘୋଷରେ ବସାନ୍ତେ କୋଇଲେକ ରାୟ
ମୁଡ଼ାସୁର କଲା ବାବୁ ଅନେକ ସମର
ଯାଗଶାଳମାନ ଭାଙ୍ଗି କଲା ନାରଖାର ।
ଲୌହ ଧନୁରେ ନାରାଚ ବିନ୍ଧଇ ଅସୁର
ଶସ୍ତ୍ରମାନ ପଡ଼େ ରାମ ରଥର ଉପର ।
ତୀକ୍ଷ୍ଣ ଶରେକ ଯୋଚିଲା ଅତି ତୀକ୍ଷ୍ଣମୁନା
ବଳରାମ ରଥେ ପଡ଼ି ଶର ହୁଏ ଚୂନା ।
ଶର ବୃଷ୍ଟି କରେ ଦୈତ୍ୟ ଶତେକେଳ ଯାଏ
ବଳଦେବ ଦେହେଁ ପଡ଼ି ସବୁ ଚୂର୍ଣ୍ଣ ହୁଏ ।
କୋଟି ସିଂହ ପରାକ୍ରମ ପୁଣି ରୋଷଭରେ
ଅସୁରକୁ ପ୍ରହାରିଲେ ବଜ୍ର ମୁଷଳରେ ।
ଦୈତ୍ୟ ଅଙ୍ଗେ ସେ ମୁଷଳ ପଡ଼ି ଭାଙ୍ଗିଗଲା
ଲୁହା ଗଦା ଘେନି ପୁଣି ରାମଙ୍କୁ ପିଟିଲା ।
ଦୈତ୍ୟଗଦା ପଡ଼ନ୍ତାରୁ ରାମ ବକ୍ଷସ୍ଥଳ
ନିଚେଷ୍ଟ ହୋଇ ପଡ଼ିଲେ ସ୍ୱାମୀ କାମପାଳ ।
ବଳରାମଙ୍କ ନିଚେଷ୍ଟ ଦେଖି ଦେବ ହରି
ରଥୁଁ ଡେଇଁଗଲେ ଚକ୍ର ସୁଦର୍ଶନ ଧରି ।
ତାଳଧ୍ୱଜ ରଥେ ନେଇ ଶୁଆଇ ରାମକୁ
ଦାରୁକ ରଥ ବାହିଲା ଦ୍ୱାରକା ପୁରକୁ ।
ଶ୍ରୀକୃଷ୍ଣ ସମର କଲେ ମୁଡ଼ାସୁର ସଙ୍ଗେ
କୌମୋଦକୀ ଗଦା ଦେବ ପ୍ରହାରିଲେ ବେଗେ
କୃଷ୍ଣର ଗଦା ପଡ଼ନ୍ତେ ପାତିଲା ସେ ଅଙ୍ଗ
ଅଧିକେ ନାଚଇ ଦୈତ୍ୟ କରି ରଣରଙ୍ଗ ।

ପାଞ୍ଚବେଳ ପଞ୍ଚଯନ୍ତ୍ରେ ପିଟିଲେ ମୁଗର
ଭୁଜପାତଣ ସହଇ ସେ ନର ଅଇର ।
କୌମୋଦକୀରେ ସେ ସହୁଁ ନୋହିଲକ କ୍ଷୟ
ଦେଖି ବିସ୍ମୟ ହୋଇଲେ ପ୍ରଭୁ ଦେବରାୟ ।
ଲୁହାର ଗଦାକୁ କରେ ଘେନି କଉଣପ
କୃଷ୍ଣ ଉପରେ ପିଟିଲା କରି ମହାକୋପ ।
ବେଳେ ବଞ୍ଚାଇଲେ ତାହା ଦେବ ଜନାର୍ଦ୍ଦନ
ଆରେକ ବେଳ ପ୍ରହାର କଲା ଯାତୁଧାନ ।
ଗଦାବର ଘାଏ କୃଷ୍ଣ ହେଲେ ଅଚେତନ
ଦେଖି ରଣ ଆକୋଶିଲା ପାଣ୍ଡବ ଅର୍ଜୁନ ।
ନନ୍ଦିଘୋଷ ରଥେ ନେଇ କୃଷ୍ଣଙ୍କୁ ଶୁଆଇ
କଥା କହି ନ ପାରନ୍ତି ପ୍ରଭୁ ଯଦୁସାଇଁ ।
ତଉଦଲକ୍ଷ ଯେ ତହିଁ ଥିଲେ ଯଦୁବଳ
କୃଷ୍ଣଙ୍କୁ ଅଚେଷ୍ଟ ଦେଖି ହୁଅନ୍ତି ବିକଳ ।
ପାର୍ଥ ଆସି ଓଗାଳିଲେ ଦୈତ୍ୟର ଆଗର
କହିଲେ ଜାଣିବା କେଡ଼େ ଷଣ୍ଢିପଣ ତୋର ।
ଅର୍ଜୁନ ସଙ୍ଗେ ପ୍ରଦ୍ୟୁମ୍ନ ଲକ୍ଷେ ଭ୍ରାତ ଘେନ
ରଣେ ଆବୋରିଲେ ଆସି ଦୈତ୍ୟକୁ ସେ ପୁଣି
ଭଗ୍ନବଳମାନେ ରାମ ଶ୍ରୀକୃଷ୍ଣଙ୍କୁ ଘେନ
ରୈବତ ପର୍ବତେ ଯାଇ ରହିଲେ ସଇନା ।
କୁବଳୟ ଅଶ୍ୱପୃଷ୍ଠେ ବସି ବୀରପାର୍ଥ
ଅସୁର ଭୁଲେ ଯୁଝଇ ଦେଖାଇ ସମର୍ଥ ।
ଶାମ୍ବ ଗଦ ଆଦି ଶ୍ରୀକୃଷ୍ଣଙ୍କ ଲକ୍ଷେ ପୁତ୍ର
ପାର୍ଥ ରଣ ଦେଖି ସର୍ବେ ହୁଅନ୍ତି ଚକିତ ।
ବେନିଦଳ ମଧ୍ୟେ କିଛି ନୋହିଲେ ପ୍ରଭେଦ
ଅସୁର ନିଧନେ ପାର୍ଥ କରେ ଘୋର ଯୁଦ୍ଧ ।
ପାଞ୍ଚ ଅର୍ବୁଦ ଅସୁର ସୈନ୍ୟ ସଙ୍ଗେ ଥିଲେ
ବେନି ଦିବସ ମଧ୍ୟରେ ସମସ୍ତେ ପଡ଼ିଲେ ।
ସମସ୍ତ ମରଇ ମୁଢ଼ାସୁର ଅଛି ଏକା
ତଥାପି ସମର କରେ ହୋଇଣ ନିଶଙ୍କା ।
ନାରଦ ମିଳିଲେ ଯାଇ ଅସକନ୍ଦବନ
କୋଇଲେ ଶୁଣ ରେ ବାବୁ ବୀର ହନୁମାନ
ଭୀମସେନ ସହଦେବ ଯୁଧିଷ୍ଠି ନକୁଳ
ରାମକୃଷ୍ଣ ସହିତରେ ଯେତେ ଯଦୁବଳ ।
ଅଚେତନ ହୋଇଲେଣି ମୁଢ଼ାସୁର ରଣେ
ନ ପାଇ ଲକ୍ଷେକ କୃଷ୍ଣପୁତ୍ର ଗଲେ କେଣେ ।

ଏହିକ୍ଷଣି ସଂଗ୍ରାମରେ ପଡ଼ିଲେ ଅର୍ଜୁନ
ଏକା ମୁଢ଼ାସୁର ଅଛି ନାହିଁ ତାର ସୈନ୍ୟ ।
ନାରଦଙ୍କ ମୁଖରୁ ସେ ଏସନକ ଶୁଣି
ପବନ ନନ୍ଦନ ତେତାଯୁଗ ବୀରମଣି ।
ଏକା ପଦକେ ସେ ହନୁମାନ ଗଲା କ୍ଷେପି
ନବସହସ୍ର ଯୋଜନେ ଇନ୍ଦ୍ରପ୍ରସ୍ଥ ବ୍ୟାପି ।
ଅର୍ଜୁନଙ୍କୁ ପଛକରି ହନୁ ହୋଏ ଆଗ
ଲୁହାଗଦା ଘେନି ପିଟେ ଦୈତ୍ୟ କରି ରାଗ ।
ନିର୍ଘାତ ପ୍ରାୟେକ ସେହି ପିଟଇ ଗରଜ
ଲୁହାର ସେ ବେନିଗଦା ପଡ଼ିଲକ ଭଙ୍ଗ ।
ଲୁହା ପରିଘେକ ପୁଣି ପିଟଇ ଦନୁଜ
ଭାଙ୍ଗି ପକାଇଲା ତାହା ପବନ ଆତ୍ମଜ ।
କୋପେ ମୁଢ଼ାସୁର ପୁଣି ଧଇଲକ ଧନୁ
ଛଡ଼ାଇଣ ତାହା ଭାଙ୍ଗି ପକାଇଲା ହନୁ ।
ବାମକରେ ଧରି ବୀର ମୁଢ଼ାସୁର ହସ୍ତ
ମାଇଲକ ବଜ୍ରସମ କରି ଏକ ମୁଥ ।
ଭୁଜେ ଭୁଜ ଛନ୍ଦି ଉଡ଼ି ଧଇଲା ନଠାଇ
ପାଦେ ପାଦ ଛନ୍ଦି ତଳେ ଦେଲାକ ପକାଇ ।
ତଜନ୍ତି ଗର୍ଜନ୍ତି ଦୁହେଁ ପ୍ରହାରନ୍ତି ବଧା
ଭୟେ କମ୍ପମାନ ହୋଇ କାନ୍ଦିଲା ବସୁଧା ।
ଶିରେ ଶିର ପରତାଳ ଅଗ୍ନି ଉହ୍ଲୁଁ ଉଠେ
କାଳାନଳ ଜାଣି ବହ୍ନି ଚୌଦିଗେ ପ୍ରକଟି ।
ରଡ଼ିର ହଡ଼ାତେ କମ୍ପି ଗଲା ପୁର ଜନ
ଚରଣ ଭିଡ଼ାତେ ଦଲ ଦଲ ତ ମେଦନୀ ।
ତଉଦକୋଶ ଆୟତ ସେ ହରିତ ବନ
ପର୍ବତ ଉଙ୍ଗର ଖାଲ ହୋଇଲା ସମାନ ।
ହନୁକୁ ମାଡ଼ି ବସିଲା ମୁଢ଼ାସୁର ବଳେ
ବେନି ଭୁଜ ଉଡ଼ ତାର ବସି ବକ୍ଷସ୍ଥଳେ ।
ଦୁଃସହ ପ୍ରତିଜ୍ଞା କୋପେ କରଇ ଚଣ୍ଡାଳ
ଆରେ ରେ ମର୍କଟ ଏବେ ପୂରିଲା ତୋ କାଳ
ଆରେ ରେ ମର୍କଟ କିଏ ତୋ ଇଷ୍ଟଦେବତା
ଆରେ ରେ ମର୍କଟ ତୋତେ ଗ୍ରସିଲା ବିଧାତା
ହୁଂକାର ଶବଦ ଏକ ହନୁମନ୍ତ କରି
ଅସୁରକୁ ଲେଉଟାଇ ବସେ ବକ୍ଷୋପରି ।
ବଜ୍ରମୁଥେକ ପ୍ରହାର କଲା କରି କୋପ
ମୁଥଘାତେ ଅଚେତନ ହେଲା କଉଣପ ।

ବେନି ଚରଣ ବୁଲାଇ ଆକର୍ଷି ଧଇଲା
ହରିମେଖଳା ପର୍ବତେ ନେଇ କଚାଡ଼ିଲା ।
ପଞ୍ଚକୋଶ ଆୟୁତନ ଯେବଣଟି ଗିରି
ଅସୁରକୁ ପ୍ରହାରନ୍ତେ ଗିରି ହେଲା ଚୂରି ।
ତହୁଁ ହନୁ ନେଇ ମାଳପର୍ବତେ ପିଟଇ
ଭାଜିଲା ସେ ଗିରି ପୁଣି ମସୀଗୁଣ୍ଡା ହୋଇ ।
ଶତେବେଳ ପ୍ରହାରିଲା ଏପରି ମାରୁତି
ସବୁ ପର୍ବତ ଏପରି ଗୁଣ୍ଡା ହୋଇଯାନ୍ତି ।
ରଣେ ହନୁମାନ ତହୁଁ ହୋଇଲା ବିମୁଖ
ମୋହ ଭେଜ ସହଦେବ ଦେଖେ ହନୁମୁଖ ।
ସହଦେବ ବୋଇଲା ହେ ଶୁଣ ହନୁମାନ
ପ୍ରତାପୀ ଦୈତ୍ୟର ଏବେ ମୃତ୍ୟୁ ବିବରଣ ।
ରଣେ ବିମୁଖ ତୁ ପୁଣି ନୁହଁ ବୀରମଣି
ଛାଡ଼ିଲେ ସଚରାଚର ଭକ୍ଷିବ ଏକ୍ଷଣି ।
ଅସୁରକୁ ଜନେ ମାଡ଼ି ବସି ବକ୍ଷସ୍ଥଳେ
ତାର ମୃତ୍ୟୁଭେଦ ଶୁଣ କହୁଛି ନିଷ୍ଟଳେ ।
ସତ୍ୟକ୍ଷେତ୍ରେ ଉପୁଜିଲା ଯେବଣ ଦଇତ
ତାହାର ନନ୍ଦନ ନାମ ଅଟେ ମଦଦନ୍ତ ।
ତାର ବଂଶେ ଜାତ ଏହି ମୂଢ଼ାସୁର ଜାଣ
ରୁଦ୍ର ସେବାକରି ପାଇଅଛି ବଡ଼ପଣ ।
ସୁଦର୍ଶନ କାଳଚକ୍ର ସୂର୍ଯ୍ୟାବର୍ତ୍ତ ଶର
ଏମାନଙ୍କ ନ ଭେଦିବ ଶରୀରେ ଏହାର ।
ବ୍ରହ୍ମଶର ପାଶୁପତ ଶର ମନଭେଦୀ
ଏ ଶରମାନ ଏହାର ଶରୀରେ ନ ଭେଦି ।
ଯମ କାଳପାଶ ନାଗପାଶ କାଳପାଶ
ଏ ଶରମାନଙ୍କେ ଏହି ନୋହିବ ବିନାଶ ।
ନ କାଟିବ ନାନା ଶସ୍ତ୍ରମାନ ସ୍ଥାର କାପ୍ତେ
ଏମନ୍ତ ବର ସେ ଦେଲେ ଦେବ ଦେବସ୍ତେ
ଦେବଲୋକ ନରଲୋକ ପବନ ବହ୍ନି
ଏଣେ ବଧ ନୋହିବ ଏ ଜାଣ କାଳତନ ।
ଈଶ୍ୱର ଦେବତା ଦେଲେ ଏହିରୂପେ ବର
ସମସ୍ତ ପ୍ରାପତ ହୋଇ ହେଲା ବଳୀୟାର ।
ବର ଦେଇ ତ୍ରିପୁରାରି ବିଜେ କପିଳାସେ
ବ୍ରାହ୍ମଣ ରୂପେ ମିଳିଲେ ବ୍ରହ୍ମା ତାର ପାଶେ
ବ୍ରହ୍ମା ବୋଇଲେ ଅନେକ କାଳ କଲୁ ତପ
କିସ ବର ପାଇଲୁ ତୁ କହ କହଣପ ।

ମୂଢ଼ା ବୋଇଲା ମାଗିଲି ଯାହା ଦେଲେ ମୋତେ
ବର ମାଗିଲି ମୁଁ ଉଟେ ଅସ୍ତ୍ର ଶସ୍ତ୍ରଯନ୍ତେ ।
ଦେବ ନର ନାଗ ଜଳ ଅନଳ ପବନ
ଏଣେ ଅବଧ୍ୟ ମୁଁ ବର ଦେଲେ ତ୍ରିଲୋଚନ
ବ୍ରହ୍ମା ବୋଇଲେ ତୁ ଏଡ଼େ ଜାଣ କହାଁ ହୁଡ଼ୁ
ଜାତ ହୋଇ କପାଇଁ ତୁ ମରଣ ନ ଲୋଡ଼ୁ ।
ଯେବଣ ଈଶ୍ୱର ତୋତେ ଦେଇଅଛି ବର
ସେହି ମରଣ ଅବଶ୍ୟ ଜାଣ କାଳାନ୍ତର ।
ଏବେ ତୁ ଯାଇଁ ପଚାର ପୁଣି ଈଶ୍ୱରଙ୍କୁ
ଶୁଣି ଦଇତ ଧାଇଁଲା ପୁଣି କୈଳାସକୁ ।
ମୃତ୍ୟୁଭେଦ ପଚାରନ୍ତେ ବୋଇଲେ କପାଳୀ
ବାମପାଦର ତୋହର ଜ୍ୟେଷ୍ଠ ଯେ ଅଙ୍ଗୁଳି
ସେ ଅଙ୍ଗୁଳି ଯେବେ ଯାଇଁ ପଶିବ ତୋ ତୁଣ୍ଡେ
ତେବେ ତୋର ଜୀବ ଜାଣ ନ ରହିବ ପିଣ୍ଡେ
ଦେବ ଦାନବ ଅନଳ ପବନ କି ଜଳ
ଏଣେ ନାଶ ନୋହିବୁ ତୁ ଜାଣ ମହାମଲ୍ଲ ।
ମର୍କଟ ହାତରେ ମୃତ୍ୟୁ ହୋଇବ ତୋ ଜାଣ
ନିଜ ଭକ୍ଷ କପି ବୋଲି ମଣିଲୁ ସେ ସ୍ଥାନ ।
କାବୁରେ ଯେବେ ପିଟିଲୁ ପର୍ବତ ଉପରେ
ଶରୀର ବଜ୍ର ତାହାର ଅସୁର ନ ମରେ ।
ସହଦେବର ବଚନ ଶୁଣିଣ ମାରୁତି
ଅଙ୍ଗୁଷ୍ଠ ଧରେ ବୀର ହୋଇ ବିଶ୍ୱମୂର୍ତ୍ତି ।
ଆକର୍ଷଣ କରି ନେଇ ଭରିଲା ତା ତୁଣ୍ଡେ
ମୃତ୍ୟୁ ହେଲା ନ ରହିଲା ଜୀବ ତାର ପିଣ୍ଡେ ।
ଆକାଶେ ଶୁଭିଲା ତହୁଁ ସାଧୁ ସାଧୁ ବାଣୀ
ଜୟମାଳା ତା ଗଳାରେ ଦେଲେ ବଜ୍ରପାଣି
ରାମକୃଷ୍ଣ ଭୀମସେନ ଯୁଧିଷ୍ଠିର ତୁଲେ
ନକୁଳ ସହିତ ମୋହ ତେଜିଣ ଉଠିଲେ ।
ଇନ୍ଦ୍ରପ୍ରସ୍ଥ ରାଜ୍ୟକୁ ସେ ତହୁଁ ଚଳିଗଲେ
ଋଷିଙ୍କି ଘେନି ସେ ଅଶ୍ୱମେଧ ଯାଗକଲେ ।
କୁବଳୟ ତୁଲ୍ୟ ଦେଲେ ପାଞ୍ଚଗୋଟି ଅଶ୍ୱ
ସଙ୍ଗ ଆଭରଣ ଅଙ୍ଗେ ଦେବ ଅଙ୍ଗବାସ ।
ଅଶ୍ୱ ଗୋଟିକେ କୋଟିଏ ମାଢ଼ ଯେ ସୁବର୍ଣ୍ଣ
ଏକ ଅଶ୍ୱର ଦକ୍ଷିଣା ଲକ୍ଷେମାଢ଼ ସ୍ୱର୍ଣ୍ଣ ।
ଯାଗ ସମାପତ ହେଲା ପୁଣି ଯେତେବେଳେ
ଆକାଶ କନକ ବୃଷ୍ଟି କଲେ ଦିଗପାଳେ ।

ଆକାଶରେ ଅଶ୍ୱ ଦେଲେ ଅଶ୍ୱିନୀକୁମାର
ହୋହସ୍ତ କର୍ମ ସମାପ୍ତ କଲେ ନୃପବର ।
କୃଷ୍ଣ ବଳରାମ ରାଜ ଣ ଦେବଗଣ
ମୁନି ଋଷିଗଣ ଗଲେ ମେଲ୍ଲିଣି ତୋରଣ ।
ଶୁଣିମା ହେ ସାଧୁଜନେ ଅଶ୍ୱମେଧ କଥା
କହିବାକୁ ମୁହିଁ ପୁଣି କସ ସାମରଥା ।
ପାଣ୍ଡବଙ୍କର ଯେତେକ ଥିଲା ହତ୍ୟାଦୋଷ
ଅଶ୍ୱମେଧ ଯଜ୍ଞେ ସର୍ବ ହୋଇଗଲା ଧ୍ୱଂସ ।
ଶ୍ରଦ୍ଧାରେ ଏହା ପଠନ କରନ୍ତି ଯେ ଲୋକେ
ଲଭନ୍ତି ସେ ସଦଗତି ନ ପଡନ୍ତି ନର୍କେ ।
ଐଶ୍ୱର୍ଯ୍ୟ ଧନ ସମ୍ପତ୍ତି ପୁତ୍ର ଯଶ କୀର୍ତ୍ତି
ଅବଶ୍ୟ ପାଇବ ଯାହା ଯେତେ ବାଞ୍ଛାକର ।
ଯମଦଣ୍ଡ ନ ଲଭି ସେ ନିଷ୍କଳଙ୍କ ହୋଇ
ନନ୍ଦନ ମଣ୍ଡଳେ ଯାଇ ନିଶ୍ଚେ ସ୍ଥାନପାଇ ।
ଯମଦଣ୍ଡ ରାଜଦଣ୍ଡ ଦୁସ୍ତରୁ ନିସ୍ତର
ଅଶ୍ୱମେଧ ଫଳଶ୍ରୁତି ହୃଦପଦ୍ମେ ଧର ।
କୃପାଜଳନନ୍ଦନୀ ଗୋ ଦେବୀ ସରସ୍ୱତୀ
କାଶୀକ୍ଷେତ୍ରହିଁ ଯାହାର ଜନମ ଧରଣୀ ।
ପ୍ରଳୟଉଦ୍ଧାରିଣୀ ଗୋ ପ୍ରସନ୍ନ ନର୍ମଦା
ସେ ଦେବୀ ଚରଣେ ମୋର ବିନୟ ସର୍ବଦା
କଳିମଳଧ୍ୱଂସିନୀ ଗୋ ପ୍ରସନ୍ନ ହିଙ୍ଗୁଳା
ସର୍ବଜନବନ୍ଦନୀ ତୋ ନାମ ଯେ ଶାରଳା ।

ପରମ ଆନନ୍ଦ ତୋର ପର ଦୁଃଖେ ଦୁଃଖ
ସର୍ବଜନ ବୋଧିନୀ ଗୋ ପ୍ରସନ୍ନ ତୋ ମୁଖ ।
ଜାତ ମଧ୍ୟ ଅନ୍ତ କରୁ ଯାର ସାଧୁ ବୁଝି
ବୁଧଜନମାନେ ଯାଇ ଚରଣ ଆରାଧି ।
ଓଡ଼ିରାଷ୍ଟ୍ର ମଣ୍ଡଳରେ ଝଙ୍କଡ଼ ଯେ ପୁରୀ
ଯମଦଣ୍ଡ ବିନାଶିନୀ ଶରଣ ତୋହର ।
ଆଦି ଅନ୍ତ ମଧ୍ୟ ନାହିଁ ଯା'ର ଅବଶେଷ
ଭୂବ ଦିବ ଅନ୍ତରୀକ୍ଷ ଶୂନ୍ୟ ଯେ ଆକାଶ ।
ପାପକର୍ମ ଯାହାଠାରେ ନାହିଁ ପୁଣ ଲେଶ
ଜଗତ ଜନମଣ୍ଡନୀ ହର ସର୍ବ ଦୋଷ ।
ଅବ୍ୟକ୍ତ ବ୍ୟକ୍ତ କ ନାହିଁ ତୋ ଆକାର
ବୃନ୍ଦାରକ ମଧ୍ୟେ ଯାର ମହିମା ଅପାର ।
ଦୁରନ୍ତ କଥା ନ ରହେ ଶୁଣି ଯାର ନାମ
କାଳଦୂତ ଅବସରେ ନ ପଶଇ ଯମ ।
ସର୍ବଦା ତୁ ବାଳପ୍ରିୟ ନାନା ରସେ ଖେଳ
ରୁଧିର ଦର୍ଶନେ ତୋର ସଦା କୁତୂହଳ ।
ଶ୍ରୀଚଣ୍ଡୀ ଶାରଳାଙ୍କର ଚରଣାରବିନ୍ଦ
ପାନକରେ ଭୃଙ୍ଗ ହୋଇ ଚହୁଁ ମକରନ୍ଦ ।
ଅହର୍ନିଶି ଭଜେ ମୁହିଁ ସେ ପାଦେ ବଇମ
କହନ୍ତି ଶାରଳାଦାସ କବି ଶୂଦ୍ରମୁନି ।

ମହାଭାରତ ଅଶ୍ୱମେଧ ପର୍ବ ସମାପ୍ତ



# ମହାଭାରତ

## ଆଶ୍ରମିକ ପର୍ବ

### ବନ୍ଦନା

ନମସ୍ତେ ଶ୍ରୀଶାରଳା ଗୋ ଝଙ୍କଡବାସିନୀ
ଅଭୟବର ଦାୟିନୀ ସଙ୍କଟ ତାରିଣୀ ।
ତବ କୃପାବଳେ ମାଗୋ ଶ୍ରୀମହାଭାରତ
କହିତ ଲେଖନେ ମୁହିଁ ହୋଇଲି ସମର୍ଥ ।
ଅଶ୍ୱମେଧ ପର୍ବ ଅନ୍ତେ ଆଶ୍ରମିକ ପର୍ବ
ବର୍ଣ୍ଣନେ ଉଦ୍ୟତ ମାଗୋ ଦେଖାଅ ସେ ମାର୍ଗ
ସଂସାର ସାଗରେ ମାଗୋ ଭାସୁଅଛି ମୁହିଁ
ଶାରଳା ଦାସକୁ ରକ୍ଷାକର ମହାମାଇ ।

---

### ଯଦୁବଂଶ ଧ୍ୱଂସ ବିବରଣ

ଶୁଣ ହୋ ସଜ୍ଜନ ଶାମ୍ବକୁମର ଚରିତ
ଶ୍ରୀମହାଭାରତ କଥା ଅତ୍ୟନ୍ତ ପବିତ୍ର ।
ଅମୃତରୁ ବଳି ଅଟେ ସେହି ରସବାଣୀ
ଶତବାର ଗଙ୍ଗାସ୍ନାନ ଫଳ ମିଳେ ପୁଣି ।
କଳି କଲୁଷରେ ଲିପ୍ତ ହୁଅନ୍ତି ଯେ ପ୍ରାଣୀ
ତରନ୍ତି ମହାଭାରତ କଥାମୃତ ଶୁଣି ।
ତହୁଁ ଶାମ୍ବ ଆସି ଦ୍ୱାରକାରେ ପ୍ରବେଶିଲା
ସୁନ୍ଦର ପଣରେ କନ୍ଦର୍ପକୁ ଧିକ୍କାରିଲା ।
ଦେଖି କୃଷ୍ଣ ବଳରାମ ଆନନ୍ଦିତ ହେଲେ
ଦ୍ୱାରକାରେ ନାନା ମହୋତ୍ସବ କରାଇଲେ ।
ପୁତ୍ରକୁ କୋଳରେ ସ୍ୱୟଂ ଧରି ବନମାଳୀ
ଅର୍ଘ୍ୟ ବନ୍ଦାପନା କଲେ ଧରି ସ୍ୱର୍ଣ୍ଣଥାଳି ।
ଶୁକ୍ଳପକ୍ଷ ତ୍ରୟୋଦଶୀ ଶନିଶ୍ଚର ବାସର
ଅଶ୍ୱିନୀ ନକ୍ଷତ୍ର ଯୋଗ ଅଟେ ସେ ଦିନର ।
ସେ ଦିନ ବିଧାତା ଅଷ୍ଟାବକ୍ରଙ୍କୁ ଯେ ସଭି
ଆଜ୍ଞାଦେଲେ ଦେଖି କୃଷ୍ଣ ମର୍ତ୍ତ୍ୟ କି କରଇ
ସରି ଅବତାର ଏବେ ହୋଇଲାଣି ଶେଷ
କାହିଁପାଇଁ ନ ଆସନ୍ତି କୃଷ୍ଣ ସ୍ୱର୍ଗଦେଶ ।
କର ଯେଉଁ ପ୍ରକାରେ ସେ ବୈକୁଣ୍ଠକୁ ଆସେ
ସକୁଟୁମ୍ବ ନାଶକରେ ପୁଣି ନିଜଦୋଷେ ।
ବିଧାତା ବଚନ ଶୁଣି ଅଷ୍ଟାବକ୍ର ଋଷି
ଦ୍ୱାରବତୀ ପୁରେ ତହୁଁ ମିଳିଲେକ ଆସି ।
ଯାଦବଙ୍କୁ ଦେଖି ମନେ ହେଲେ ବଡ ତୋଷ
ଚିନ୍ତିଲେ ଅଚିରଦିନେ ହୋଇବେ ଏ ନାଶ
ସ୍ୱଭାବେ ତାଙ୍କ ଶରୀର ଅଟେ ଅଷ୍ଟବାଙ୍କ
ଉପହାସ କରନ୍ତି ଯେ ତାଙ୍କୁ ମନ୍ଦଲୋକ ।
ସଭାମଧ୍ୟେ ବସିଥିଲେ ଅନେକ ଯାଦବେ
ତାହାଙ୍କୁ ସେ ଭ[illegible] ନ କରନ୍ତି ମଉଗର୍ବେ ।
ଉଦ୍ଧତ ଯମ ତହିଁ ପଶି ନ ପାରନ୍ତି
ଶ୍ରୀକୃଷ୍ଣ ପ୍ରସାଦେ ସର୍ବେ ଗର୍ବିତ ଅଟନ୍ତି ।
ଋଷିଙ୍କ ଦେଖିଣ ସର୍ବେ ପିଲ୍ଲଯାକ ମିଳି
ଶାମ୍ବକୁ ସ୍ତ୍ରୀବେଶ କଲେ ହୋଇ କୁତୂହଳୀ ।
ଲୌହ ମୁଷଳେକ ତାର ପେଟେ ନେଇ ବାନ୍ଧି
ମିଛେ ଅଶାକତ ପ୍ରାୟେ ହୁଏ କାନ୍ଦି କାନ୍ଦି ।
ବନସ୍ଥଳେ ଯାଇଁ ମୁନିଙ୍କୁ ସେ ପ୍ରଣମିଲେ
ଯଥାବିଧି ମାନ୍ୟ ତାଙ୍କୁ ସମସ୍ତେ କରିଲେ ।
ପଚାରିଲେ କରଯୋଡ଼ି ମୁନିଙ୍କର ଆଗେ
ଏ କାମିନୀ ଗର୍ଭବାସ ହୋଇଲା କି ଯୋଗେ ।
ଦଶମାସ ପୂରିଲାଣି ନ କରେ ପ୍ରସବ
କି ଅଛି ଏହାର ଗର୍ଭେ ଫେଡ଼ିଣ କହିବ ।
ଧ୍ୟାନକରି ମୁନିବର ସକଳ ଜାଣିଲେ
ଅତି କୋପକରି ହୋଇ ପିଲାଙ୍କୁ ବୋଇଲେ
ଶୁଣ ରେ ଏହାର ଗର୍ଭେ ଅଛି ଯେଉଁ ପୁତ୍ର
ତାହାଦ୍ୱାରା ନାଶଯିବ ଯାଦବ ସମସ୍ତ ।

ମୁହିଁ ଜନମାବଧି ମୋତେ ଭଲ ଜନଦାସ
କୃଷ୍ଣ ସଙ୍ଗ ନାଶ କୁଳେ ଯାଅ ଯଦୁବଂଶ ।
ଏମନ୍ତ ଶାପ ତାଙ୍କୁ ଦେଲେ ମହାମୁନି
ଦ୍ୱାରକାକୁ ନ ଗଲେ ସେ ଅପମାନ ଘେନି ।
ମୁନିଙ୍କ ଶାପ ଲଙ୍ଘଣ ନୋହେ ଶିଷ୍ୟମାନେ
ଜପ କଥା ଜାଣନ୍ତି ତତ୍ତ୍ୱ ମନେ ମନେ ।
କଉତୁକେ ଆମ୍ଭେମାନେ କି କାର୍ଯ୍ୟ କରିଲୁ
ମହାଭକ୍ତଙ୍କର ବ୍ରହ୍ମଶାପକୁ ଲଭିଲୁ ।
ଚଳ କୃଷ୍ଣଙ୍କୁ କହିବା ଏ କଥା ସକଳ
ପ୍ରତିକାର ଥିଲେ କରିବେ ସେ ଆଦିମୂଳ ।
ପ୍ରଦ୍ୟୁମ୍ନ ସଙ୍ଗତେ ଯେତେ ପୁତ୍ର ତହିଁ ଥିଲେ
କି ବୋଲି କହିବା ବୋଲି ମନେ ବିଚାରିଲେ
ତହୁଁ ପ୍ରବେଶ ହୋଇଲେ ଶ୍ରୀକୃଷ୍ଣ ଗୃହରେ
ଅତ୍ୟନ୍ତ ବିରସ ହୋଇ ହୋଇଲେ କାତରେ ।
ପ୍ରଣାମ କରି ଶ୍ରୀକୃଷ୍ଣ ପାଦେ ସର୍ବେ ଭେଟି
ହୋଇଲେ କୁମରେ କରପଦ୍ମ ଯୋଡ଼ି ଉଠି ।
ହସିବା ଛଳନ୍ତେ ଦେବ ଯେଉଁ କର୍ମ କଲୁ
ଅଷ୍ଟାବକ୍ର ଋଷିଙ୍କର ଶାପ ଯେ ଲଭିଲୁ ।
କପଟେ ଶାମ୍ବକୁ ନାରୀବେଶ କରିଥିଲୁ
ଲୁହାର ମୂଷଳେ ତାର ପେଟେ ପୁରାଇଲୁ ।
କଉତୁକ ପାଇଁ ଆମ୍ଭେ ଋଷିଙ୍କର ଆଗେ
କରଯୋଡ଼ି କରି କହିଲୁ ଏ ଯା ପାଇଁ ଦେବେ
ଏହି ସୁନ୍ଦରୀର ହୋଇଅଛି ଗର୍ଭବାସ
ଜନମ କରିବ ଏହି ପୁତ୍ର କବା ନାରୀ ।
ଧ୍ୟାନକରି ମୁନିବର ହୋଇଣ ନିଷ୍ଠୁର
କପଟ ଚରିତ ବୋଲି ଜାଣିଲେ ସକଳ ।
ବୋଇଲେ ଏ ନାରୀ ଯାହା ପ୍ରସବ କରିବ
ହେବ ସବୁ ଯଦୁବଂଶ ତହୁଁ ନାଶ ଯିବ ।
ପିଲଙ୍କଠାରୁ ଶ୍ରୀକୃଷ୍ଣ ଏମନ୍ତ ଶୁଣିଲେ
ଗାନ୍ଧାରୀର ଶାପ ତହୁଁ ମନେ ସୁମରିଲେ ।
କୃଷ୍ଣ ବିଚାରିଲେ ପୂର୍ବୁ ଅଛି ତ ସ୍ୱରୂପ
ଗଡ଼ଯିବ କାହିଁପାଇଁ ଗାନ୍ଧାରୀର ଶାପ ।
ମାୟାକରି ତାର ବଂଶ ନସାଇଲି ମୁହିଁ
ଯାହା ଅର୍ଜିଛି ଅବଶ୍ୟ ତାହା ଭୁଞ୍ଜିବଇଁ ।
ତହୁଁ ଶ୍ରୀକୃଷ୍ଣ ଯେ ଅକ୍ରୂରକୁ ଡକାଇଲେ
ପ୍ରବେଶନ୍ତେ ତାହାଙ୍କୁ ଏପରି ଆଜ୍ଞା ଦେଲେ ।

ସାମ୍ବ ଉଦରପ୍ରସବୁ ଯେ ଲୁହା ମୁଷଳେ
ଶାମ୍ବଙ୍କ ଉଦରରୁ ପ୍ରବେଶିବ ଉଲ୍ଲେ ।
ପାଣ୍ଡବଇ ଥିଲେ ତହିଁ ଯୁଧିଷ୍ଠି ସହିତେ
ମୋହର ବଚନ ବୋଲି କହିବୁ ତୁରିତେ ।
ମୋ ଆଜ୍ଞା ଭଳି ଭୀମଙ୍କୁ ଆଣିବୁ ତୁ ଘେନି
କୃଷ୍ଣ ବାକ୍ୟ ଚଳିଗଲେ ଅକ୍ରୂର ତକ୍ଷଣି ।
ପ୍ରବେଶି ଶ୍ରୀକୃଷ୍ଣ ଆଜ୍ଞା କହିଲେ ତହିଁ
ଭୀମସେନଙ୍କୁ ସେଠାରୁ ଆଣିଲେକ ଗର ।
ଦ୍ୱାରକା ଭୁବନେ ଆସି ଭୀମ ପ୍ରବେଶିଲେ
ଭୋଜନରେ କୃଷ୍ଣ ତାଙ୍କୁ ଆଲିଙ୍ଗନ କଲେ ।
ଶ୍ରୀକୃଷ୍ଣ ପୁଚ୍ଛନ୍ତି ତାଙ୍କୁ ସମସ୍ତ କୁଶଳ
ଭୀମ କହିଲେ ତବ ପ୍ରସାଦରୁ ସବୁ ଭଲ
କହନ୍ତି ତଦନ୍ତେ ଭୀମ ଆଗେ ହୃଷୀକେଶ
ଲୌହ ମୁଷଳଟି ଦେଖାଇଲେ ତାର ପାଶ ।
ଆଜ୍ଞା ବାବୁ ଏକକାର୍ଯ୍ୟ କର ଏବେ ମୋର
ଏ ଲୁହାକୁ ବିନାଶ ତୁ କର ଶୀଘ୍ରତର ।
କ୍ଷୀରସିନ୍ଧୁ ତୀରେ ଅଛି ପାଷାଣ ଯେ ଗିରି
ଚଉଶତେ ମୁଣ୍ଡ ପ୍ରସ୍ଥ ଅଛଇ ତାହାର ।
ଏ ଲୁହାକୁ ସେ ପର୍ବତରେ ଘେନ ଘୋର
ଯେସନେ ଏ ଶେଷହେବ ତାହା ଶୀଘ୍ରତର ।
ସେ ଲୁହାକୁ ଘେନି ଭୀମ ଚଳିଲେ ତୁରିତେ
ଦ୍ୱାରକାପୁରୁ ଯୋଜନ ଅଟେ ଦଶଶତେ ।
ସେ ପର୍ବତ ଉପରକୁ ଉଠି ଭୀମସେନ
ବଳଦେଇ ସେ ଲୌହକୁ ଘଷେ ପ୍ରତିଦିନ ।
ପବନ ଶ୍ରୀଭୀମସେନଙ୍କୁ ଦଅଇ ଆହାର
ହଜାରକେ ଘୋଷିଲେ ସେ ବରଷ ଏଗାର ।
ଧୂଳିପ୍ରାପ୍ତ କରି ତାକୁ ଚୂର୍ଣ୍ଣାଇଣ ଦେଲା
କ୍ଷୁଦ୍ରହୋଇ ଖଣ୍ଡେ ମାତ୍ର ଶେଷକୁ ରହିଲା ।
ରେଣୁ ପ୍ରାପ୍ତ ହୋଇ ଯେଉଁ ଲୁହା ଛୁଡ଼ିଗଲା
ଏରକାବନ ହୋଇ ସେ କୂଳରେ ଲାଗିଲା ।
ଏପରି ଘୋରିଣ ଲୁହାଖଣ୍ଡ କଲି କ୍ଷୟ
ମନେ ବିଚାରଇ ଭୀମ ପବନ ତନୟ ।
ଏହି କ୍ଷୁଦ୍ର ଖଣ୍ଡି ଥିବା କରିପାରେ କସ
ଏତେ ଖଣ୍ଡ ଘୋରିକରି କଲି ଅବଶେଷ ।
ସମସ୍ତ ଚୂର୍ଣ୍ଣାଇଣ ଯେ ଧୂଳି ପ୍ରାପ୍ତ ଭଲି
ପୁଣି ବୃକୋଦର ମନେ ବିଚାରିଲେ ଭଲ ।

କ୍ଷୁଦ୍ର ଖଣ୍ଡି ଅଛୁ ଯେ ସେ କରିପାରେ କସ
ଅଷ୍ଟାବକ୍ର ଦେଲେ ଶାପ ହେଲା ଅବଶେଷ ।
ଏହାଭାବି ସମୁଦ୍ରକୁ ପକାଇଣ ଦେଲି
ସେ ସିନ୍ଧୁପାଣିରେ ଏକ ମୀନ ଯେ ଗିଳିଲା ।
ଅଗାଧ ସମୁଦ୍ରେ ଯାଇଁ ପଡ଼ନ୍ତେ ସେ ଲୁହା
ତକ୍ଷଣେ ଜଳଙ୍ଗ ମୀନ ଭକ୍ଷିଲା ଯେ ତାହା ।
ଗିଳନ୍ତେ ଦିଶିଲା ସେହି ସ୍ୱର୍ଣ୍ଣମତ୍ସ୍ୟ ପ୍ରାୟେ
ନିଜ ତେଜେ ସିନ୍ଧୁକଲା ସେ ଆଲୋକମୟେ ।
ସେଠାବରୁ ଭୀମସେନ ବାହୁଡ଼ିଣ ଗଲା
ଦ୍ୱାରକାରେ ଶ୍ରୀକୃଷ୍ଣଙ୍କ ସମ୍ମୁଖରେ ମିଳିଲା ।
ବୋଇଲା ଭୀମଦେବ ସେହି ମୂଷଳ ଘୋରିଲି
ଘୋରି ଘୋରି ସେ ଗିରିକି ଭୂମିସମ କଲି ।
ଶେଷକୁ ଅଳ୍ପ ରହିଲା ଘୋରି ନ ପାରିଣ
ସମୁଦ୍ର ଜଳରେ ତାହା ଦେଲି ପକାଇଣ ।
ଭୀମ ବାକ୍ୟ ଶୁଣି ପଚାରନ୍ତି ବାସୁଦେବ
ଅଷ୍ଟାବକ୍ର ଋଷି ଶାପ ଅନ୍ୟଥା ନୋହିବ ।
ସେ ଲୁହାଖପରା ରେଣୁ ଯହିଁ ପଡ଼ିଥିବ
କାଳେ ଯଦୁବଂଶ ତାହାଦ୍ୱାରା ନାଶଯିବ ।
ଶେଷ ଖଣ୍ଡ ରହିଲା ଯା ନ ପାରିଲି ଘୋରି
ସେହିଖଣ୍ଡକଲେ ପ୍ରାଣଯିବ ଯେ ମୋହର ।
ଶ୍ରୀକୃଷ୍ଣ ଭୀମକୁ ତହୁଁ ଆଲିଙ୍ଗନ କଲେ
ଭୁଜେଭିଡ଼ି ଆନନ୍ଦରେ ବସାଇଲେ କୋଳେ
ସଦା ଅନୁରାଗ ମୋତେ ରଖିଥିବୁ ଭୀମ
ଦୋଷେ ଅଦୋଷେ ମୋଠାରେ ନକରିବୁ ତମ
ନାନାରତ୍ନ ଦେଇ ବିଦାକଲେ ସେ ଭୀମକୁ
ସେ ତହୁଁ ଆସି ନମିଲେ ଯୁଧିଷ୍ଠି ଦେବଙ୍କୁ ।
ଯୁଧିଷ୍ଠିରଦେବ ବୋଲେ କେଉଁ କାର୍ଯ୍ୟପାଇଁ
ଶ୍ରୀକୃଷ୍ଣ ତୋତେ ଏଠାରୁ ଗୁପ୍ତେଗଲେ ନେଇ
ଭୀମସେନ ବୋଲେ ଦେବ ଅଷ୍ଟାବକ୍ର ଋଷି
ଏକଦିନେ ଦ୍ୱାରବତୀପୁରେ ଥିଲେ ଆସି ।
ବନେ ଖେଳବାର ତାଙ୍କୁ ଦେଖିଣ ଯାଦବେ
ଲୁହା ଖପରାଏ ନେଇ ଭରି ଶାମ୍ବ ଗଭେ ।
ନାରୀବେଶ କରି ନାନା ଆଭରଣ ଦେଲେ
ପ୍ରଣାମ କରାଇ ଋଷିଙ୍କୁ ଯେ ପଚାରିଲେ ।
ଦଶମାସ ହେଲା ହୋଇଛୁ ଏ ଗର୍ଭବତୀ
କହନ୍ତୁ ସ୍ୱାମୀ ଗର୍ଭେ ଅଛି ପୁତ୍ର କି ଦୁହିତା ।

କହିଁ ପ୍ରସବ ନ କରି ପାଏ ବଡ଼ ବ୍ୟଥା
କହ ଆଜ୍ଞା କି ମୁନି ଏଥିର ବାରତା ।
ଧ୍ୟାନେ ଜାଣିଲେ କରନ୍ତି ଏହୁ ଉପହାସ
ବୋଇଲେ ତଦ୍ଭାଗ ଭ୍ରମନ୍ତ ବଂଶ ହେବ ନାଶ ।
ଶ୍ରୀକୃଷ୍ଣ ସହିତେ ନାଶ ହେବ ଦୁଷ୍ଟମାନେ
ଏ ବାରତା ଶୁଣି କୃଷ୍ଣ ଭୟକଲେ ମନେ ।
ମୋତେ ଡାକକରି କହିଲେଯେପ୍ସାକୁ ଘୋରି
ଅବଶେଷ ନ ରଖିଣ ସବୁ ଶେଷ କରି ।
କ୍ଷୀର ସିନ୍ଧୁ ତଟେ ଏକ ପାଜନାମେ ଗିରି
ବଶାଶତେ ଯୋଜନ ଯେ ବିସ୍ତାର ତାହାର ।
ତହିଁରେ ଲାଗଇ ଦେବ କଳ୍ପବଟ ଯାଇ
ତା ପରେ ମୁଁ ସେ ଲୁହାକୁ ଘୋରିଲି କଠାରି
ଏଗାର ବରଷେ ସେହି ଲୁହା ଯେ ଛିଣ୍ଡିଲା
ସେ ମାଳ ପର୍ବତ ଭୂମି ସମାନ ହୋଇଲା ।
ଟିକିଏ ମାତ୍ର ରହିଲା ନ ପାରିଲି ଘୋରି
ସମୁଦ୍ର ଜଳରେ ତାହା ଫୋପଡ଼ାଇ ଦେଲି ।
ଯୁଧିଷ୍ଠି ପୁଚ୍ଛିଲେ ଶୁଣ ଆହେ ସହଦେବ
ଋଷିଶାପ ସତେ କି ଶ୍ରୀକୃଷ୍ଣଙ୍କୁ ଘଟିବ ।
ମନୀବର ବୋଇଲେ ତା ଅବଶ୍ୟ ଫଳିବ
ଅଷ୍ଟାବକ୍ର ଋଷିକଥା ଆନ ନ ହୋଇବ ।
ଭୀମଦେବ ଲୁହା ଘୋରନ୍ତେ ଜନ୍ମିଲା ଯେ ଫେଣ
ତହୁଁ ଜାତ ହେଲା ବହୁ ଏରକାର ବନ ।
ତାହା ଧରିଣ ଯାଦବେ ହେବେ ମହାମରି
ସକଳେ ପଡ଼ିବେ ତହୁଁ ହୋଇ ଜ୍ଞାନହାରି
ସେ ସଙ୍ଗରବନେ ଯଦୁବଂଶ ନାଶଯିବେ
ଶେଷକୁ କେବଳ ଏକା ଶ୍ରୀକୃଷ୍ଣ ରହିବେ ।
ଏହାଶୁଣି ଯୁଧିଷ୍ଠିର ସନ୍ତାପିତ ହେଲେ
କି ହେବ କି ହେବ ବୋଲି ବହୁଶୋକକଲେ
କୃଷ୍ଣ ବିନା ରାଜ୍ୟ ଆମ୍ଭ କିସ ପ୍ରୟୋଜନ
କି ଆମ୍ଭର ସୁଖଭୋଗ ଐଶ୍ୱର୍ଯ୍ୟମାନ ।
ଶୁଣି ମନ୍ତ୍ରୀ ବୋଲେ ଭୀମ ଯାକୁ ଫିଙ୍ଗି ଦେଲା
ତତକ୍ଷଣେ ତାକୁ ଏକ ମତ୍ସ୍ୟ ଯେ ଗିଳିଲା ।
ବେଣୁପୁର ଗ୍ରାମବାସୀ କୁଞ୍ଜର କୈବର୍ତ୍ତ
ଜାଲଯୋଗେ ସେ ମୀନକୁ ଧରିଲା ତୁରିତ ।
ଦୃଢ଼କରି ସେ ମୀନକୁ କୈବର୍ତ୍ତ ଆଣିଲା
ଜର୍ଯ୍ୟାହାତେ ତାହାଦେଇ ଏପରି କହିଲା ।

ଆମ୍ଭର ମିତ୍ର ଯେ ଜାରାଶବର ଅଟନ୍ତି
ଏ ମୀନ ଗୋଟିକ ତାଙ୍କୁ ଦଅ ହେ ଝଂଟତ ।
ସବୁ ମତ୍ସ୍ୟମାନଙ୍କରେ ଏ ସାର ଅଟଇ
ଦେଖିଲେ ଏହାକୁ ଖୁସି ହୋଇବ ଯେ ସେହି
ଅପୂର୍ବ ଯେ ପଦାର୍ଥ ତା ମିତ୍ରଙ୍କୁ ଦେବାର
ଏହା ଶୁଣି କେଉଟୁଣୀ ଗଲା ଯେ ସତ୍ୱର ।
ଶବରପୁରେ ପ୍ରବେଶି ସେ ମତ୍ସ୍ୟକୁ ଦେଲା
ବନ୍ଧୁଭାବେ ନାନାମିଷ୍ଟାଳାପ ତହିଁ କଲା ।
ମୀନ ଦେଖି ଶବର ଯେ ହେଲା ଆନନ୍ଦିତ
ମୃଗ ଗୋଟିଏକ ଆଣି ଦେଲାକ ତୁରିତ ।
ବନ୍ଧୁସ୍ନେହେ ମିତ୍ର ଘରଯାକୁ ତାହା ଦେଲା
ଏଥୁଅନ୍ତେ ସେ ଶବର ମତ୍ସ୍ୟକୁ ଦେଖିଲା ।
ମତ୍ସ୍ୟ ହାତେ ଧରିଣ ସେ ଗୃହକୁ ଯେ ଗଲା
ଶବରୁଣୀକି ହକାରି ବଚନ ବୋଇଲା ।
ଏ ମତ୍ସ୍ୟକୁ ଶୀଘ୍ରକରି କେଳାଅ ଯେ ତୁହି,
ମଇତ୍ର ଆମ୍ଭର ଦେଇଛନ୍ତି ପଠାଇ ।
ପତିର ଏ ବାକ୍ୟ ଯହୁଁ ଶବରୀ ଶୁଣିଲା
ପନକ ଘେନିଣ ତହୁଁ ମୀନକୁ ଚିରିଲା ।
କେନଖଣ୍ଡ କରିଣ ଯେ କାଟନ୍ତେ ତାହାକୁ
ଗର୍ଭଭିତରୁ ପାଇଲା ସେ କ୍ଷୁଦ୍ର ଲୁହାକୁ ।
ଦେଖି ତାହା ଶବରୁଣୀ ଆଶ୍ଚର୍ଯ୍ୟ ହୋଇଲା
ହାତେ ଧରି ନିଜ ପତି ପାଶକୁ ଚଳିଲା ।
ବୋଲେ ମୀନ ପେଟେ ଥିଲା ଏ ଲୁହାଖଣ୍ଡକ
ବଡ଼ ସୁନ୍ଦର ଏ ଅଟେ ଦିଶେ ଜକ ଜକ ।
ଦେଖି ତାକୁ ଶବର ତା ହାତୁ ଘେନିଗଲା
ତୀକ୍ଷ୍ଣ ମୁନା ଦେଖି ତାକୁ ମନେ ବିଚାରିଲା ।
କେତେ ତେଜସ୍କର ଲୁହା ଖଣ୍ଡକ ଦିଶଇ
ନାରାଚ ଗୋଟିଏ ଗଢ଼ାଇବି ତାହା ନେଇ ।
ଅନ୍ୟଥା କରିବ କିଏ ଭବିଷ୍ୟତ ବାଣୀ
ଯାହା କରିବେ କରନ୍ତୁ ଦେବ ଚକ୍ରପାଣି ।
ସେ ଲୁହା ଘେନି କମାରଶାଳକୁ ଯେ ଗଲା
ଧନ ଦେଇଣ ନାରାଚ ଏକ ଗଢ଼ାଇଲା ।
ବେନି ପାଖ ଜାନ ତାର ଧାର ଅତିଶୟ
ବାଣଦେଖି ଶବରର ଉଲ୍ଲସିଲା କାୟ ।
ସେ ବାଣକୁ ସଦା ଯତ୍ନକରି ରଖିଥାଏ
ମୃଗୟାକୁ ଗଲେ ନିଜ ସଙ୍ଗତରେ ନିଏ ।

ଅଷ୍ଟାବକ୍ର ଋଷି ଦେଲେ ଯେଉଁ ଅଭିଶାପ
ଅନ୍ୟଥା କରିବା ପାଇଁ ଅଛି କେଉଁ ଲୋକ ।
ତ୍ରିଭୁବନ ହର୍ତ୍ତା କର୍ତ୍ତା ଯଦ୍ୟପି ଶ୍ରୀପତି
ତେବେ ବ୍ରହ୍ମଶାପରୁ ସେ ନୋହିଲେ ମୁକତି
ସେହି ଶରକୁ ଧରି ପୁଣି ସେ ଜାରା କରତ
ମାୟାଧରଙ୍କ ଦେହକୁ ବିନ୍ଧିବ ନିଶ୍ଚିତ ।
ଅଷ୍ଟାବକ୍ରଙ୍କର ଶାପ ଅନ୍ୟଥା ନୋହିବ
ତଦ୍ୱାରା ସଂସାର ତ୍ୟାଗ କରିବେ ଯେ ଦେବ ।
ଯୁଧିଷ୍ଠି ବୋଇଲେ ରେ ଭୁ ଭ୍ରାତ କହ କିସ
ଶରଘାତେ ଶ୍ରୀକୃଷ୍ଣ ହୋଇବେ କି ନାଶ ।
ପୁଣି ଯୁଧିଷ୍ଠିରଙ୍କି ସହଦେବ ଯେ କହଇ
ସେ ଜାରା ଶବର ପୂର୍ବ ଅଙ୍ଗଦ ଅଟଇ ।
ଶ୍ରୀରାମ ସମ୍ବାଦ ନେଇ ଲଙ୍କାକୁ ସେ ଗଲା
ରାବଣଶିରୁ ମୁକୁଟ ଘେନିଣ ଆଇଲା ।
ସୁବର୍ଣ୍ଣ ରତନର ଭୂଷଣ ମଣ୍ଡିଣି ସହିତେ
ତାହିଁ ଆଣି ସମର୍ପିଲା ଶ୍ରୀରାମର ହାତେ ।
ଖୋଳ ହୋଇଣ ବୋଇଲେ ତାଙ୍କୁ ରଘୁନାଥ
ବର ମାଗ ଅଙ୍ଗଦରେ ଦେବଇଁ ମୁଁ ସତ୍ୟ ।
ଅଙ୍ଗଦ ବୋଇଲା ପିତା ଶତ୍ରୁ ଅଟେ ଦେବ
ଏ ବର ଦିଅ ମୋ ହସ୍ତେ ତୁମ୍ଭ ପ୍ରାଣଯିବ ।
ଦାଶରଥି ବୋଇଲେ ଯେ ହେଲା ମୋର ସତ୍ୟ
ଦ୍ୱାପରେ, ଶବରରୂପେ କରିବୁ ଯେ ହତ ।
ଘଟିବ କୃଷ୍ଣଙ୍କୁ ନିଶ୍ଚେ ପୂର୍ବର ପ୍ରସ୍ତାବ
ଯୁଧିଷ୍ଠିରଙ୍କ ଅଗ୍ରତେ କହେ ସହଦେବ ।
ପୁଣି ଯୁଧିଷ୍ଠି ବୋଇଲେ ଆମ୍ଭଙ୍କୁ ଛାଡ଼ିଣ
କିପରି ସଂସାରତ୍ୟାଗୀ ହେବେ ନାରାୟଣ ।
ସହଦେବ ବୋଲେ ଆଗେ ଯେବେ ଭଗବାନ
ତାଙ୍କ ପଛେ ପଛେ ଆମ୍ଭେ କରିବା ଗମନ ।
ଜୟ ଜୟ ରାମଚନ୍ଦ୍ର ଅନାଦି ଅଚ୍ୟୁତ
କୁତୂହଳେ ଜନ୍ମି ଦେବ କରୁ ସ୍ଥିତି ଅନ୍ତ ।
ତୁମ୍ଭ ନାମ ଶୁଣି ଭୟ ପାନ୍ତି ଯମଥାଟ
ତେବେ ନିଜ ମରଣକୁ ରଖିଅଛ ବାଟ ।
ମାୟାରୂପେ ଜାତହୋଇ ଦୁଷ୍ଟଙ୍କୁ ସଂହାରୁ
ରକ୍ଷାକର ଦେବ ମୋତେ ଏ ମାୟା ସଂସାରୁ ।
ଜନ୍ମେ ଜନ୍ମେ ସୁଜ୍ଞଜନେ ଚିନ୍ତ ରାମପଦ
ରକ୍ଷୟା ତପକୁ ଏକା ସେହି ଅଟେ ଗତ ।

ଶ୍ରୀକୃଷ୍ଣ ପାଦପଦ୍ମରେ କରିଣ ଭକତ
ଶୂଦ୍ରମୁନି ଶ୍ରୀଶାରଳା ରଚଇ ମୁକତ ।

## ଧୃତରାଷ୍ଟ୍ରଙ୍କ ବନ ଗମନୋଦ୍‌ଯୋଗ

ଏଥୁଅନ୍ତେ ବୈବସ୍ୱତ ମନୁ କହେ ବାଣୀ
ବଡ଼ ଆଶ୍ଚର୍ଯ୍ୟ ହୋଇଲେ କୁମ୍ଭ କଥା ଶୁଣି ।
ପାଣ୍ଡବଙ୍କ ଅନ୍ନ ରାଜା ଧୃତରାଷ୍ଟ୍ର ଭୁଞ୍ଜି
ଛଳିଣ ଆତ୍ମା ଭକ୍ଷିଲ କେତେ ମନ ରଞ୍ଜି ।
ଯୁଧିଷ୍ଠିରଙ୍କ ସମ୍ପଦକୁ ଦେଖଇ ନେହରେ
ଶତପୁତ୍ର ଭୀମସେନ ମାଇଲା ସମରେ ।
ଭୀମଠାରୁ ଅପମାନ ପାଇ ପଦେ ପଦେ
ରହିବାର ନ ଯୋଗାଇ ତାହାଙ୍କ ସନ୍ନିଧେ ।
ପିତାଠାରୁ ଦଶଗୁଣ ଅଧିକ ଯେ ମାତା
ଆତ୍ମା କେସନେ ଧଇଲା ସୁବଳ ଦୁହିତା ।
ଭଲେ ଯେ ଅନ୍ଧପଟଳ ବାନ୍ଧିଥିଲା ଆକ୍ଷି
ଦୁଃଖ ସୁଖହିଁ ନ ଦେଖି ସ୍ୱାମୀ ଦୁଃଖେ ଦୁଃଖୀ
ପାଣ୍ଡବଙ୍କ ଅନ୍ନରୁତେ ତାହାଙ୍କୁ କେମନ୍ତେ
ତାହା ଶୁଣିଣ ରୋମାଞ୍ଚ ଜାତ ମୋର ଗାତେ ।
ଶୁଣିବାକୁ ଇଚ୍ଛା ମୋର ଅଛେ ମହାପତି
କହିବା ମହାଭାରତ କଥା ବାକ୍ୟସ୍ଥିତ ।
ଅଗସ୍ତି ମୁନି ବୋଇଲେ ଶୁଣ ହେ ମହତ
ଯାହା ପୁଚ୍ଛାକଲୁ ତୁ ଯେ ଅଟୁ ପୁଣ୍ୟବନ୍ତ ।
ଅନେକ-ମତେ ତପସ୍ୱୀ ହୋଇଣ ଯୁଧିଷ୍ଠି
ଭୃତ୍ୟ ପ୍ରାୟେ ଦକାରନ୍ତ ପ୍ରାୟେ ଥାଏ ଜଟି ।
ପଣ୍ଡୁଠାରୁ ଶତଗୁଣେ ସେବେ ଧୃତରାଷ୍ଟ୍ରେ
ମାତାଠାରୁ ଦଶଗୁଣେ ଗାନ୍ଧାରୀକ ଖଟେ ।
ଏ ବିଧିରେ ଗଲା ପଞ୍ଚଦଶ ଯେ ବରଷ
ଗାନ୍ଧାରୀ ଦେବୀ ମନରେ ନ ଥାଏ ହରଷ ।
ପତି ଅନ୍ଧ ଦେଖି ଅନ୍ଧପୁଟୁଳି ବାନ୍ଧିଲା
ଶତପୁତ୍ର ଉପୁଜାଇ କାହିଁ ନ ଦେଖିଲା ।
ତନେ ଆକାଶୁ ଗମନ କଲେ ବେଦବ୍ୟାସ
ତାଙ୍କ ପାଦେ ପ୍ରଣମିଲା ଅମ୍ବିକାର ଶିଷ୍ୟ ।
ବ୍ୟାସ ବୋଇଲେ ଏଠାରେ ନ ରହ ତୁ କ୍ଷଣେ
ପୁତ୍ର ସମ୍ପଦ ହରଇ ରହୁ କି କାରଣେ ।
ପୁତ୍ର ବଇରୀ ଚରିତ ଦେଖୁ କେଉଁରୂପେ
ସକଳ ହରାଇ କର୍ମ ମନ୍ଦ ଅଛୁ ପାପେ ।

ଏଠାରେ ଥିଲେ ଅପାର ଦୁଃଖ ହେବ ମନେ
ମୋର କଥା ମାନ ବାବୁ ପଶ ଯାଇଁ ବନେ ।
ତୋର ପୂର୍ବ ପୁରୁଷର ନାମ ନାହିଁ ଏଥେ
ତହାରିଁ ଆଉ ଉଦରୁ ବୟସ ଚଳୁଥେ ।
ଅରଣ୍ୟରେ ରହ ବାବୁ କର ପୁଣ୍ୟକର୍ମ
ପଥକୁ ହଷାଳ ଏତା ହୋଇବ ନା ଧର୍ମ ।
କେହି କାହାର ନୁହଇ ମିଛମାୟା ସିନା
ଯୁଧିଷ୍ଠି ନେଉଳକୁ ଲୁହ ଦୁଅ ତୁ ତମନା ।
ଧନ ଜନ ବନ୍ଧୁ ପୁତ୍ର କେହି ତୋର ନାହିଁ
ଏ ବୟସେ ଧର୍ମ ଏକା ସାହାଯ୍ୟ ହୋଇ ।
ଏମନ୍ତ ସବୁ ବୁଝାଇ କହିଲେ ଯେ ମୁନି
ସେ କଥାକୁ ଧୃତରାଷ୍ଟ୍ର ମନେ ଧାଏ ଘେନି ।
ଧୃତରାଷ୍ଟ୍ରଙ୍କୁ ଯୁଧିଷ୍ଠି ସଙ୍ଗେ ନେଇ ନିତ
ନାନା ଉପଭୋଗ ଆଣି ପାଶେ ସମର୍ପନ୍ତି
ଦେବାର୍ଚ୍ଚନେ ଧୃତରାଷ୍ଟ୍ର ଗାନ୍ଧାରୀ ଯେ କୁନ୍ତୀ ।
ବଚନେ ଭୋଜନେ ତାଙ୍କୁ କରନ୍ତି ତୃପତି
ଧୃତରାଷ୍ଟ୍ର ଗାନ୍ଧାରୀଙ୍କ ପାଶରେ ବସାଇ
ଯୁଧିଷ୍ଠି ଦେବ ପ୍ରଶଂସା ବହୁତ କରଇ ।
ଯୁଧିଷ୍ଠି ଭକ୍ତିରେ ଗାନ୍ଧାରୀ ଯେ ଧୃତରାଷ୍ଟ୍ର
ଦୁର୍ଯ୍ୟୋଧନ ଥିବାଠାରୁ ଲଭିଲେ ସନ୍ତୁଷ୍ଟ ।
ପୁତ୍ରଙ୍କୁ ପାସୋରିଲେ ସେ ଯୁଧିଷ୍ଠିଙ୍କି ଦେଖି
ଦୁରନ୍ତ ଶୋକ ପାସୋରି ହୋଇଥାନ୍ତି ସୁଖୀ ।
ଧୃତରାଷ୍ଟ୍ରଙ୍କୁ ମାନନ୍ତି ରାଜବିଧି ଆଜ୍ଞା
ଧର୍ମ ଯୁଧିଷ୍ଠି ଚିତ୍ତରେ ନ କଲେ ଅବଜ୍ଞା ।
ଏସନକ ଜାଣି ଭୀମ କୋପ ଯେ କରଇ
ଅନ୍ଧ ରାଜାକୁ ବହୁତ କଟୁ ଯେ କହଇ ।
ଯୁଧିଷ୍ଠି ଦେବ ଭୀମଙ୍କୁ ଦେଉଛନ୍ତି ଗାଳି
ଅନ୍ଧ ଅନ୍ଧୁଣୀ ଚରଣେ ହେଇ ନଇଁଗଲା ।
ଭୀମ ବୋଇଲା ତୁ ବନ୍ଧୁ ସୋଦର ମରାଇ
ପୁତ୍ରନାତି ରାଜ୍ୟ ଧନ ସକଳ ହରାଇ ।
ଯୁଧିଷ୍ଠିର ରାଜ୍ୟଧନ କରୁଅଛୁ ଭୋଗ
ଅନ୍ଧ ହେଲୁ ଥିଲା ପୁଣି ତୋତେ ଏହି ଯୋଗ ।
ତୋ ଯୋଗୁ ଦୁଃଖ ପାଇଲୁ ଆମ୍ଭେ ସିନା ବନେ
ତେବେ ଦୟା ନ ବସିଲା ତନେ ତୋର ମନେ
ରାଜାର ଆଜ୍ଞା ମେଣ୍ଟିଣ କାହୁଁ ହୋଇପାରେ
ଆପଣା ଶିକ୍ଷକ ହେଇ ପୋଷେ ବଇରୀରେ ।

କେମନ୍ତେ ଧୃତରାଷ୍ଟ୍ର କୁ ଖେଦନ୍ତି ନ କରୁ
ମନ୍ଥରା ନ ଭଷି ଏବେ ଶାସନ ନ ଧରୁ ।
ସଭାରେ ଭୀମ ପ୍ରତିଜ୍ଞା କରି ଏହା କହେ
ଏ ଭୁଜେ ମାରିଲି ମୁହିଁ ତୋର ଶତପୋଏ ।
ଦୁଃଶାସନ ଭୁଜକୁ ମୁଁ ଉପାଡ଼ିଲି ଭାବେ
ଦୁର୍ଯ୍ୟୋଧନର ମୁକୁଟ ମର୍ଦ୍ଦିଲଇଁ ପାଦେ ।
ଏମନ୍ତ ଭୀମ ପ୍ରତିଜ୍ଞା କରେ ମହାରୋଷେ
ଶୁଣି ଧୃତରାଷ୍ଟ୍ର ରାଜା ରହେ ମନ ତ୍ରାସେ ।
ଦେହ ଧରି ନ ପାରି ସେ ଆସ୍ଥାନରୁ ଉଠି
ସଭାରେ ଭୀମ କହିଲି ସହୁଁ ସେ ଉକ୍ତି ।
ଗାନ୍ଧାରୀ ଆଗରେ ଯାଇ କହେ ଧୃତରାଷ୍ଟ୍ର
ପ୍ରାଣ କାହିଁକି ରଖିବା ପାଇ ଏତେ କଷ୍ଟ ।
ଭୀମର କଟୁ ବଚନ ହୃଦେ ମୋର ଭେଦି
ପ୍ରିୟେ ଯୋ ଆତ୍ମ ହତିବା କହ କିସ ବୁଦ୍ଧି ।
ପ୍ରାଣ ଛାଡ଼ିବା କି ଅଛେ ଖାଇକରି ବିଷ
ଆତ୍ମଘାତୀ ହୋଇ ମଲେ ଲାଗିବ ଯେ ଦୋଷ
ବୋଲଇ ଗାନ୍ଧାରୀ ସବୁ ଅଟେ ତୁମ୍ଭ ଦୋଷ
ଆଗହୁଁ ଏ କଥା ଯେତେ କହିଥିଲେ ବ୍ୟାସ ।
ଶତେ ପୁତ୍ରଙ୍କୁ ତୋହର ମାଇଲେକ ସହୁଁ
ହର୍ଷ ଜ ଆତ୍ମାଯୋନ କୁ ତାଙ୍କ ମୁଖ ଚହୁଁ ।
ସତ୍ୟକୁ ରକ୍ଷା କରିଣ ନ ପାରିଲ ତୁମ୍ଭେ
ପଶୁ ଧର୍ମ୍ମ ନ ଜାଣି ପଡ଼ିଲେ ସେ ଲୋଭେ ।
ଏବେ କେତେ ଭୁଲ ନାଥ ଯିବା ବାନପ୍ରସ୍ଥେ
ପୂତକାଷ୍ଟ ହରାଇବା ପଖାଣ କାମନ୍ତେ ।
ଶଙ୍ଖୁ ଅଗ୍ନି ଖାଇ ଯାହା ଧରିଥାଇଁ ପ୍ରାଣ
ଏହାଠାରୁ ବଳ ଆଉ ଅଛି କ କଷଣ ।
ବୋଲେ ଧୃତରାଷ୍ଟ୍ର ଯୁଧିଷ୍ଠିରେ ମୁଁ ବଶ
କପଟ କହିବ ମୁହିଁ ଯିବ ବନବାସ ।
ବନସ୍ଥ ଭାବରେ ଯେବେ କହିବ ସେ ମୋତେ
କହି ନ ପାରଇ ଛାଡ଼ିଯିବଇଁ କେମନ୍ତେ ।
ଯୁଧିଷ୍ଠି ମୋଠାରେ କରେ ଅତ୍ୟନ୍ତ ଭକତି
ଶତେପୁତ୍ରଠାରୁ ବଳ ତାଠାରେ ମୋ ପ୍ରୀତି ।
ଗାନ୍ଧାରୀ ବୋଲେ ଯୁଧିଷ୍ଠି କରେ ଯେବେ ସ୍ନେହ
ଅନ୍ୟ ଉପାୟରେ ତାକୁ ଭଣ୍ଡାଇଣ କହ ।
ଯୁଧିଷ୍ଠିଙ୍କୁ ହକାରିଣ ଗୁପତେ କହିବୁ
ଶ୍ରାଦ୍ଧ ଦେଲେ ମୁକ୍ତ ହୋଇଯିବେ ପୁତ୍ରସବୁ ।

ଯୁଧିଷ୍ଠିଙ୍କୁ ଅଧେ ଧନ ଏପରି ମାଗିବା
କେହି ଜାଣି ନ ପାରିବେ ବନନ୍ତକୁ ଯିବା ।
ଭାର୍ଯ୍ୟାର ଏ ବଚନ ଧୃତରାଷ୍ଟ୍ର ଶୁଣି
ବିଦୁରଙ୍କୁ ଡାକିଲେ ସେ ପାଶେ ତତକ୍ଷଣି ।
ବୋଇଲେ ଯୁଧିଷ୍ଠି ଦେବଙ୍କୁ ତୁ ଯାଇ ବୋଲ
ବନ୍ଧୁ ସୁହୃଦ ଯେ ରଣେ ପଡ଼ିଲେ ସକଳ ।
ଭୂରିଶ୍ରବା ବାହ୍ଲୀକ ଯେ ଦୁହେଁ ମୋର ଅଜା
ଜ୍ୟେଷ୍ଠ ପିତା ଅନନ୍ତ ଯେ ଶାନ୍ତନୁ ମହାରାଜା ।
ଘଟୋତ୍କଚ ଅଭିମନ୍ୟୁ ଦ୍ରୌପଦୀଙ୍କ ସୁତେ
ଦୁର୍ଯ୍ୟୋଧନ ଆଦିକରି ମୋର ପୁତ୍ର ଶତେ ।
ଏହାଙ୍କୁ ଶ୍ରାଦ୍ଧ ଦେବାକୁ କରେ ମୁହିଁ ଇଚ୍ଛା
ଧର୍ମ୍ମ ପ୍ରାପତ ଯେ ପୂର୍ଣ୍ଣ ହେବ ମନବାଞ୍ଛା ।
କୁନ୍ତୀ ପୁତ୍ରମାନେ ତୋର ଅତ୍ୟନ୍ତ ବିଶ୍ୱାସ
ଶ୍ରାଦ୍ଧପାଇଁ ଧନ କିଛି ମାଗି ଦେନ ଆସ ।
ଶ୍ରାଦ୍ଧକରି ପାରି ପୁଣି ଯିବଇଁ ପ୍ରୟାଗ
ଏ ବାରତା କହ ଯାଇ ଯୁଧିଷ୍ଠିଙ୍କ ଆଗ ।
ବିଦୁର ବୋଇଲେ ଭଲ ନୁହେ ଏ ବ୍ୟବସ୍ଥା
କ ଅଭବ ଅଛି ଏବେ କ ଲଭୁଛ ଚନ୍ତା ।
କାହିଁପାଇଁ ଏ କଥାରେ କର ମନଯୋଗ
କୃପି ଉପୁଜାଇ ଫଳ ନ କରୁଛ ଭୋଗ ।
ଏହା କହି ସେଠାବରୁ ବିଦୁର ଯେ ଗଲେ
ଯୁଧିଷ୍ଠିରଙ୍କ ଗୃହରେ ଯାଇ ପ୍ରବେଶିଲେ ।
ପାଣ୍ଡବେ ଦେଖି ତାହାଙ୍କୁ ପ୍ରଣାମ କରିଲେ
କୋଳରେ ଧରି ବିଦୁର ଆଲିଙ୍ଗନ କଲେ ।
ତଦନ୍ତେ ବୋଇଲେ ତୁମ୍ଭେ ଶୁଣ ପାଣ୍ଡୁଭାଇ,
ଧୃତରାଷ୍ଟ୍ର ଏହି ଆଜ୍ଞା ଅଛନ୍ତି ଯେ ଦେଇ ।
ଭୀଷ୍ମ ଦ୍ରୋଣାଚାର୍ଯ୍ୟ କର୍ଣ୍ଣ ଶଲ୍ୟଙ୍କର କୂଳେ
ଭୂରିଶ୍ରବା ବାହ୍ଲୀକ ଯେ ସୋମଦତ୍ତ ମଲେ ।
ଗାନ୍ଧାରୀ ପୁତ୍ର ସହିତେ କୁନ୍ତୀ ପୁତ୍ରମାନେ
ଏ ଆଦି କେତେ ବନସ୍ଥ ହେଲେ ମହାରଣେ
ଏହାଙ୍କ ମୋକ୍ଷ ନିମିତ୍ତ ଅନ୍ଧକାର ସୁତ
ଗୟାରେ ପିଣ୍ଡଦେବେ ସେ କରି ପଞ୍ଚତୀର୍ଥ ।
ଯେ କାରଣେ କିଛି ଧନ ମାଗେ କୁରୁପତି,
ନ ଦେଲେ ତୁମ୍ଭଙ୍କୁ ହେବ ବଡ଼ ଅପକୀର୍ତ୍ତି ।
ଏହି କାର୍ତ୍ତିକ ଶୁକଳ ପୂର୍ଣ୍ଣିମାର ଦିନ
ଗାନ୍ଧାରୀ ସହ ଗମନ କରିବେ ସେ ବନ ।

ମୋତେ ପେଷିଲେ ଅଇଲି ମୁହିଁ ଧନଅର୍ଥେ
ତୁମ୍ଭ ନଗ୍ରରକୁ କସ ଆସଇ ଯୁକତେ ।
ଯୁଧିଷ୍ଠିରଦେବ ବୋଇଲେ ଯେବେ ଯିବେ ବନ
ଆମ୍ଭଠାରୁ ସ୍ନେହ ତେବେ ଗ୍ରଡ଼ିଲେଣି ଜାଣ ।
ଧନ କଷ୍ଟୁ ମାଗି ଯେବେ ଯିବେ ଆନ ପଥେ
କ ବୁଦ୍ଧି କରିବା କହ ପାର୍ଥ ତୁହେ ଏଥେ ।
ଅର୍ଜୁନ ବୋଇଲେ ଯେବେ ନ ମାଗନ୍ତେ ଧନ
ତେବେ ଜାଣନ୍ତେ ରଜାର ସିନା କୋପମନ
ଯେବେ କାରଣ କରବେ ଏ ମୃତ୍ୟୁଲୋକଙ୍କୁ
ନଅନ୍ତୁ ଭଣ୍ଡାରଯାକ ସମର୍ପିବା ତାଙ୍କୁ ।
ତାହାଙ୍କର ଧନ ସିନା କରନ୍ତେ ସେ ଦାନ
ଚତୁର୍ଥ ବୟସେ ଧର୍ମ କରନ୍ତୁ ରଜନ ।
ଭୀମସେନ ବୋଇଲନ୍ତ ଏ କସ ବଚନ
ସବୁ ଧନ ନେବାରେ କ ଉଚିତ ତାହାର ।
ଜୀବନ୍ତେ ସେ ବନ୍ଧୁଗୋତ୍ର ନ ବୋଲେ ଆମ୍ଭଙ୍କୁ
ଏବେ ଧନ ନେବାପାଇଁ ବୋଲନ୍ତି ତୁମ୍ଭଙ୍କୁ ।
କେଉଣ କୃତ୍ୟ ନ କଲେ ପଶାଯୂତ ଖେଳେ
ଆମ୍ଭର ରାଜ୍ୟ ସମ୍ପଦ ଘେନଲେ ସେ ହେଳେ
ପାଞ୍ଚଭାଇ ସଭାତଳେ ବସ୍ତ୍ର ଭୃତ୍ୟମେଳେ
କାହିଁ ତାହାଙ୍କର ପ୍ରୀତି ଥିଲା ସେହି ବେଳେ ।
ଧର୍ମକାର୍ଯ୍ୟରୁ କୌରବେ ହେବେଯେବେ ଭ୍ରଷ୍ଟ
ତେବେ ସେ ଆମ୍ଭର ପାଇ ଯିବ ସବୁକଷ୍ଟ ।
ଯଦ୍ୟପି ଦୁର୍ଯ୍ୟୋଧନର ହେବ ନର୍କଗତି
ତାହା ଶୁଣିଲେ ଆନନ୍ଦ ହେବ ମୋର ମତି ।
ମରିଯିବା ପ୍ରାଣୀ କେହି କାହାର ନୁହନ୍ତି
କପାଇଁ ଧନଭଣ୍ଡାର କରିବା ରେ କ୍ଷତି ।
ଭୀଷ୍ମ ଦ୍ରୋଣ ସେ କୁଳର ଅଟନ୍ତି ଯେ ଶ୍ରେଷ୍ଠ
କପାଇଁ ସଂଗ୍ରାମ କରି ହେଲେ ପ୍ରାଣଭ୍ରଷ୍ଟ ।
ଆମ୍ଭଙ୍କୁ କ ମାରିବାକୁ ନ କଲେ ସମର
ମଲ ଉତ୍ତାରେ ଉପ୍ରୋଧ କସ ହୋ ଆମ୍ଭର ।
ଶ୍ରାଦ୍ଧ କରିବାର ଯେବେ ଯୁକତ ଅଟଇ
ଆମ୍ଭେ ନ କରିଣ ଧନଦେବା କାହିଁପାଇଁ ।
ଭୀଷ୍ମ ଭୂରିଶ୍ରବା ଦ୍ରୋଣାଚାର୍ଯ୍ୟ ସୋମଦତ୍ତ
ବିରାଟ ଦ୍ରୁପଦ ପୁଣି ଆମ୍ଭ ଶତେ ପୁତ୍ର ।
କୋଟିକୋଟି ଉଭର ଯେ ଆମ୍ଭର ସମସ୍ତେ
ଆଉ ଯେତେ ବୀରମାନେ ମଲେ ଆମ୍ଭ ହାତେ ।
ସେମାନଙ୍କ ଶ୍ରାଦ୍ଧ ଆମ୍ଭେମାନେ ଯେ କରିବା
ଅଶ୍ୱତ୍ଥାମା ହାତେ ଦ୍ରୋଣ ଶ୍ରାଦ୍ଧ କରାଇବା ।
କର୍ଣ୍ଣଙ୍କର ଶ୍ରାଦ୍ଧ ଏବେ କରୁ ତାର ମାତା
ଧୃତରାଷ୍ଟ୍ର କରନ୍ତୁ ଯେ ତାଙ୍କ ପୁତ୍ର ଚିନ୍ତା ।
ଆମ୍ଭ ଧନ କାହିଁପାଇଁ ତାହାଙ୍କୁ ଯେ ଦେବା
ସେ ମଲେ ତାହାର ଶ୍ରାଦ୍ଧ ଆମ୍ଭେ ଯେ କରିବା
ଯୁଧିଷ୍ଠି ବୋଇଲେ ଭୀମ ନ ବୋଲ ଏ ଗିର
ପାଣ୍ଡୁଙ୍କର ଜ୍ୟେଷ୍ଠ ସେହି ଗୁରୁ ଯେ ଆମ୍ଭର ।
ସେ ଥାଆନ୍ତେ ଆମ୍ଭର ଯେ କର ନୁହେ ଧର୍ମ
କୁରୁକୁଳ ଶ୍ରେଷ୍ଠ କରବେ ସେ ସବୁକର୍ମ ।
ତୁ ଯାହା ବୋଲୁ ତହିଁରେ ତାଙ୍କ ଦୋଷନାହିଁ
ଦଇବ ବିପାକେ ଦୋଷୀ ହୋଇଛନ୍ତି ସେହି ।
ବହୁଦୂର ବିଦେଶୀକ ମରିବା ଦେଖିଲେ
ତା ପ୍ରେତକ୍ରିୟା କରିବାପାଇଁ ଶାସ୍ତ୍ର ବୋଲେ ।
ତା କ୍ରିୟା ନୋହିଲେ ଆମ୍ଭଙ୍କୁ ଯେ ହେବ ଲଜ୍ଜା
ବାହୁଡ଼ି ଦୁର୍ଯ୍ୟୋଧନ କ ହେବ ଏଥେ ରଜା ।
ପାଷାଣରୁ ବଳୀ ଭୀମ ଅଟେ ତୋର କାୟା
ଏଡ଼େ କପଟିରେ ତୋର ନ ବସଇ ଦୟା ।
ଗୁରୁଜନ ଧର୍ମକଥା ଯେ ଜନ ଏଡ଼ଇ
ସକଳ ଯଶ କୀରତି ତାର ନାଶଯାଇ ।
ବନ୍ଧୁ ସହୋଦର କାର୍ଯ୍ୟ ଯେ ଲୋକ କରଇ
ସେହି ମହାତ୍ମା ଯେ ଅଟେ ସର୍ବ ଗୁଣଗ୍ରାହୀ ।
ଦ୍ରୋଣଙ୍କର ଗୁଣ କାବୁ କହି ପାରେ କେହି
ବିଦ୍ୟାରେ ପାରଗ ତୁମ୍ଭେ ହୋଇଥାନ୍ତ କାହୁଁ
ଯେହୁ ବ୍ରହ୍ମଶର ତିନଲୋକ ପାରେ ଦହି
ପୁତ୍ରେ ପଛକରି ପାର୍ଥେ ଥିଲେ ସେ ଶିଖାଇ ।
ପିତୃହୀନ ଆମ୍ଭେମାନେ ଅଟୁ କାଳେ କାଳେ
ପ୍ରାଣୁ ବଳ ଭୀଷ୍ମଦେବ ଆମ୍ଭଙ୍କୁ ପାଳିଲେ ।
ଆମ୍ଭ ଅର୍ଥେ ଭୀଷ୍ମଦେବ କଲେ ଶରଶଯ୍ୟା
ମୃତ୍ୟୁଭେଦ କହି ସବୁ କରିଥିଲେ ତେଜ୍ୟା ।
ବାଲୁଣିର ଜଳପ୍ରାପ୍ତ ହେଲୁ ଭୀମସେନ
ଗୁଣ ଛାଡ଼ି କେବଳ କୁ ବାଛୁ ଅବଗୁଣ ।
ଅନେକ ବନ୍ଧୁ ସୁହୃଦ ମଲେ ଆମ୍ଭ ଅର୍ଥେ
ତାଙ୍କ ଶ୍ରାଦ୍ଧ ଆମ୍ଭଙ୍କୁ ଯେ ଲାଗଇ ଯୁକତେ ।
ଏକା ଧନଦେଇ ଦୁଇକାର୍ଯ୍ୟ ଯେ କରିବା
ଇହଲୋକ ଜିଣି ପରଲୋକ ଯେ ଭାବିବା ।

ଧୃତରାଷ୍ଟ୍ର ଶତପୁତ୍ର ସମରେ ତୁ ମାର
ତେବେ ପୁଣ ରାଗ ଶାନ୍ତ ନୋହିଲା ତୋହର
ଭୀମ ବୋଇଲା ଏମନ୍ତ କିମ୍ପା ରାଜା କହୁ
ମୋର ସମ୍ମତ ନୋହିଲେ ଧନ ନେବ କେହୁ
ଅର୍ଜୁନ ବୋଇଲେ ଦେବ ଶୁଣ ପୂଜ୍ୟପାଦ
ନ ବୋଲନ୍ତୁ ଭୀମ ଯତେକ ନ ହେଉ ବିବାଦ ।
ଭଣ୍ଡାରଧନେ ସେ ଯେବେ ହୋଇବେ ଲୋଭୀ
ଆମ୍ଭଣା ଧନ ଦେବା ଅଟଇ ଯେ ବିଧି ।
ସୁବର୍ଣ୍ଣ ରତ୍ନ ଗଜ ରଥ ଅଶ୍ୱ ଘୋଡ଼ା
ବସ୍ତ୍ରଅଳଙ୍କାର ନିଅ ଯେତେ ତାଙ୍କ ଲୋଡ଼ା ।
ଯାହା ସେ ଇଚ୍ଛନ୍ତି ଦେଇ ସନ୍ତୁଷ୍ଟ କରିବ
ମୁଁ ଯାହା ବୋଲୁଛି ତାହା ତନୟେ କହିବ ।
କାର୍ତ୍ତିକ ପୂର୍ଣ୍ଣିମା ରହିଲା ଯେ ଦିନ ଦଶ
ବିଧିମତେ ଶ୍ରାଦ୍ଧ କଲେ ସର୍ବେ ହେବେ ତୋଷ
ଭୀମର ଏ କଟୁ କଥା କେବେ ନ କହିବ
ଯେପରି ସନ୍ତୁଷ୍ଟ ହେବେ ତାହା ବୁଝାଇବ ।
ଏ କଥା ସବୁ ଶୁଣିବେ ଯେବେ ଧୃତରାଷ୍ଟ୍ର
ଦ୍ୱିଗୁଣ ବାଧିବ ମନେ ତାଙ୍କୁ ପୁତ୍ର କଷ୍ଟ ।
ଧନ ଘେନିଣ ବିଦୁର ତତକ୍ଷଣେ ଗଲା
ଧୃତରାଷ୍ଟ୍ର ଅଗ୍ରତରେ ଯାଇଁଣ ମିଳିଲା ।
ତୋହର ଆଜ୍ଞାରେ ମୁହିଁ ଆଣିଲଇ ଧନ
ଦେବାକୁହିଁ ସନମତ ନ କଲେ ଭୀମ
ଅନେକ ଝିଙ୍ଗାସି ଭୀମ ବୋଇଲେ ତୋତେ
କେବେହେଁ ଶାନ୍ତ ନୋହିଲା କ୍ରୋଧ ତାର ଚିତ୍ତେ
ଅର୍ଜୁନର ଯୁଧିଷ୍ଠିର ଯେତେ ଅଙ୍ଗ ଧନ
ତାହା ମୁଁ ଆଣିଲି ବେଗ କର ତୋ ସଦନ ।
ଯୁଧିଷ୍ଠିରଦେବ ବୋଇଲେ ପଛରେ ଗୋଡ଼ାଇ
ଭୀମ ଦୁର୍ବୁଦ୍ଧି ପିତାଙ୍କ ନ କହିବୁ ତୁହି ।
ଶୁଣିଲେ ରାଜନଙ୍କ ମନେ ବ୍ୟଥା ପାଇ ତାତ
କହିବ ମୁଁ ତାହାଙ୍କର ତନୟ ଭକତ ।
ଏମନ୍ତ ଯେ କହୁଛନ୍ତି ଯୁଧିଷ୍ଠି ରାଜନ
ଭୀମ କଥାରେ ନୋହିବ କେବେହେଁ ଦମନ ।
ପୃଥ୍ୱୀରେ ଅଛନ୍ତି ଯେତେ କ୍ଷତ୍ରିୟ ପରିଷ୍ଟ
ସମସ୍ତଙ୍କ ମଧ୍ୟେ ଭୀମସେନ ଅଟେ ଶ୍ରେଷ୍ଠ ।
କ୍ଷତ୍ରିୟ ଗୁଣ ପୂରିଣ ଅଛି ତାହାଠାରେ
ତା ଦୁଷ୍ଟପଣକୁ ନ ଭାବିବ ସେ ମନରେ ।

ନଦୀ ବଢ଼ିଲେ ସେ ଅସ୍ତ୍ର ହୋଇ ନ ରହଇ
ବ୍ରାହ୍ମଣର କ୍ରୋଧେ ସେହିକ୍ଷଣି ନାଶ ଯାଇ ।
କ୍ଷତ୍ରିୟ ଶସ୍ତ୍ରର ଜାଣ ପାଷାଣ ସଂଜାତ
ଶସ୍ତ୍ରରୁ ନ ଛୁଡ଼ଇ କୋପ କଦାଚିତ ।
ଅଗ୍ନି ସମ୍ମୁଖେ ଲଭିଲେ ତା ତେଜ ସରଇ
ତେଜ ଥିବାଯାଏ ସକଳ ବସ୍ତୁ ଦହୁଥାଇ ।
କ୍ଷତ୍ରିୟ ସ୍ୱଭାବ ଯେବେ ଖୋଜିବ ସଂସାରେ
ଭୀମସେନଠାରୁ ବଳୀ ନାହିଁ କାହାଠାରେ ।
ବିଦୁର ବୋଇଲେ ରାୟେ ଭୀମର କି ଦୋଷ
ଆପଣାର ମନ୍ଦପଣେ ଅର୍ଜିଲେ ଅଯଶ ।
କେବଣ ତମ ନ କଲେ ଅନ୍ଧ ସେ ଭୀମକୁ
ବିଷଲଡୁ ଖୁଆଇଣ ମେଲିଲେ ଜଳକୁ ।
ନାଗୁଣୀ ଖାଇ ବୋଲିଣ ଲିବଥିଲେ ହୃଦେ
ଜତୁଘର କଲେ ପୁଣି ପୋଡ଼ିବେ ପ୍ରମାଦେ ।
କପଟ ପାଶାରେ ପୁଣି ହରିଲେ ସମୃଦ୍ଧି
ପାଞ୍ଚାଳୀକି ବିବସନ କଲେ ମନ୍ଦବୁଦ୍ଧି ।
କଟେ ବେଢ଼ିଣ ମାଇଲେ ପୁତ୍ର ଅଭିମନ୍ୟୁ
କିମ୍ପାଇଁ ପାସୋରି ପିବ ଗୁଣ ତାର ମନୁ ।
ଯାହା ସେ ଅର୍ଜଇ ତାହା ଅବଶ୍ୟ ଭୁଞ୍ଜଇ
ଦର୍ପଣର ପ୍ରତିବିମ୍ବ ପରି ରହିଥାଇ ।
ବିଦୁର ମୁଖେଁ ଏସନ ବାକ୍ୟ ରାଜା ଶୁଣି
ଆପଣାର ଲଲାଟରେ ତାଡ଼େ ବେନପାଣି ।
ପୁରୋହିତ ମୁଖେ କରିଥିଲେ ଯେ ଅଭ୍ୟାସ
ସେହିରୂପେ ଦାନ ତର୍ପଣ କଲେ ଶେଷ ।
କରମ ଆଦର ପୁଣି ହୋଇଲା ସେ ଶାନ୍ତ
ଗାନ୍ଧାରୀକି ଘେନି ତହୁଁ ଚଳିଲା ତୁରିତ ।
ଯୁଧିଷ୍ଠିରଙ୍କ ଆସନେ ବସି କୁରୁସାଇଁ
ପାତ୍ର ମନ୍ତ୍ରୀ ଅମାତ୍ୟାଦି ବ୍ରାହ୍ମଣ ବସାଇ ।
ବୋଲଇ ସେ କାର୍ତ୍ତିକର ପୂର୍ଣ୍ଣିମା ସମସ୍ତେ
ଯିବାକୁ ମୁଁ ଉଦବେଗ ହୁଏ ବାନପ୍ରସ୍ଥେ ।
ଯେଝା ଅନୁରୂପେ କର ସମସ୍ତଙ୍କୁ ପୂଜା
ଯୁଧିଷ୍ଠିରଙ୍କୁ ଘେନିଣ ବୋଲେ କୁରୁରାଜା ।
ବାବୁ ତପତ ପବନ ଶୀତ ବୃଷ୍ଟି ସହି
ଯେ ରାଜ୍ୟ ପାଳଇ ତାକୁ ଧନ୍ୟଧନ୍ୟ କହି ।
ଲୋକରେ ସଜନ ଜାଣ ହୁଏ ସେହି ରାଜା
ମନ୍ତ୍ରୀ ଉତ୍ତମେ ନ ପାଳେ ଯେବେ ଜନ ପ୍ରଜା

ରାଜାଙ୍କର କାର୍ଯ୍ୟ ଜାଣ ହୁଏ ତହିଁ ନଷ୍ଟ
ତାର ନ ଜାଣିମା ଘଣ ମନ୍ତ୍ରି ବୁଦ୍ଧିଭ୍ରଷ୍ଟ ।
ପର୍ଶୁରାମ ପରାକ୍ରମ ରାଜାର ଯେ ଆଜ୍ଞା
ଯାହା ବୋଲିବେ ତାହା ନ କରିବ ଅବଜ୍ଞା ।
ଜ୍ୟେଷ୍ଠଭ୍ରାତା ପୃଥକୁହିଁ ଜାଣ ମାତାପିତା
ସ୍ତ୍ରୀଙ୍କ ସ୍ୱାମୀ ଏମାନେ ଅଟନ୍ତି ଦେବତା ।
ଇନ୍ଦ୍ର ଯେଉଁପରି ପାଳେ କରିଣ ସୁବୃଷ୍ଟି
ରାଜା ସେମନ୍ତ ପାଳଇ ତାହାର ଯେ ସୃଷ୍ଟି ।
ଅଜ୍ଞାନେ ନୃପତି ଯେବେ ଦଣ୍ଡକୁ ଛାଡ଼ିବ
ମନେ ନ ରଖି ତାହା ଯେ ଉପେକ୍ଷା କରିବ ।
ସତ୍ୟେ ପ୍ରଜା ପାଳି ମୃଗୟା କରିବ ନିତି
ଶତ୍ରୁ ଉପରେ ଦେଖାଇବ ଗାଢ଼ମୂର୍ତ୍ତି ।
ତୀର୍ଥ ବ୍ରତଠାରୁ ଭଲ ନାହିଁ ସଦଗତି
ନିତ ଅଭ୍ୟାସ କରିବ ବ୍ରହ୍ମଜ୍ଞାନ ପୋଥି ।
ଲଭିଲେ ପୃଥ୍ୱୀ ପାଳିବାକୁ ରାଜାଙ୍କର ଇଚ୍ଛା
ସନ୍ଦେହ ହେଲେ କରିବ ପଣ୍ଡିତଙ୍କୁ ପୃଚ୍ଛା ।
ରାଜା ହୋଇଣ ପାଳିବ ସତ୍ୟେ ରାଜ୍ୟଧର୍ମ
ଭୃତ୍ୟ ବଶ ହେଲେ ସାଧ୍ୟ ହୁଏ ସବୁ କର୍ମ ।
ସୁଖେ ରାଜ୍ୟ କର ବାବୁ ହୋଇଣ କୁଶଳ
ନ୍ୟାୟପଥ ଆଚରଣ ସଦା ପ୍ରଜାପାଳ ।
ପ୍ରଜା ମୁଖରେ ଯଦ୍ୟପି ଶୁଭେ ସାଧୁ ଧ୍ୱନି
ସେ ରାଜା ସ୍ୱର୍ଗରେ ବସେ ସ୍ୱଶରୀର ଘେନି ।
ପୁରୂରବା ମାନଧାତା ବଳି ଜାନୁଘଣ୍ଟ
ବେଣୁ ଆଦି ପ୍ରଜାପାଳ ବୋଲାଇଲେ ଶ୍ରେଷ୍ଠ ।
ପ୍ରଜାପାଳ ସୁଖେ ବାବୁ ଭୋଗକର ରାଜ୍ୟ
ପ୍ରଜା କଲ୍ୟାଣେ ରାଜାର ବଢ଼ଇ ଐଶ୍ୱର୍ଯ୍ୟ ।
ଚଣ୍ଡୂଳ ସେବନ କରିବ ପିତୃବ୍ରତ ଦାନ
ଦେବ ଅଗ୍ନି ବ୍ରାହ୍ମଣର ପୂଜାରେ ସେ ଅଭି ।
କୃଷି କର୍ମ କରି ପ୍ରଜା ହୁଏ ଯେବେ ଦୁଃଖୀ
ସେମାନଙ୍କୁ ପାଳି ରାଜା କରିବ ଯେ ସୁଖୀ ।
ଧାର୍ମିକ ସୁଧୀର ବିଦ୍ୟାବନ୍ତ ପୁତ୍ରଗୋଟି
ତୁଆରବ କିସ ଭିନ୍ନ ନ ଜାଣୁ ଯୁଧିଷ୍ଠି ।
ଭୀମ ବୋଇଲ ସମସ୍ତ ବୁଦ୍ଧି ଯେବେ ଜାଣୁ
ତୋହର ପୁତ୍ରଙ୍କ ଆଗେ ତାହା ନ ବଖାଣୁ ।
ଲମ୍ପଟେ ପ୍ରବର୍ତ୍ତି ବୋଲାଉଛୁ ମହାଯୋଗୀ
ପରକୁହିଁ ବୈଦ୍ୟ ପୁଣି ଆପଣେ ଯେ ଭୋଗୀ ।

ଯୁଧିଷ୍ଠି ଦେବଙ୍କୁ ରାଜନୀତି କି ଅଜଣା
କେଉଁ ତପଟେ ତାହାଙ୍କୁ ଦେଖିଲୁ ଯେ ଊଣା
ମନ୍ତ୍ରୀ ଯାର ସହଦେବ କହଇ ସମସ୍ତ
ଶାସ୍ତ୍ର ଉପଦ୍ରବ ହେତୁ ସବୁଳ ନିରତ ।
ବୃହସ୍ପତିଙ୍କ ସମାନ ଯାହାଙ୍କ ନବ୍ରମା
ଧରଣୀ ସମାନ ପୁଣି ଉସ୍ୱାଧର୍ମ କ୍ଷମା ।
ଭୀମ ଅର୍ଜୁନ ଯାହାର ଅଟନ୍ତି ଯେ ଭାଇ
ତାହା ସଙ୍ଗେ ମହୀରେ କେ ସମାନ ଅଟଇ ।
କି ତାହାଙ୍କୁ କେଉଁ ନୀତି ଶିଖାଇବୁ ପୁଣ
ଅମାତରେ ତେର ଧନ ଭାଗ ଗମ୍ଭ ଜାଣ ।
ଶୀଘ୍ର ହୋଇ ନାହିଁପାଇଁ ବନକୁ ନ ଯାଇ
ଉଆରଣ ରାଜଙ୍କ ସେ କେତେ କଥା କହୁ ।
କି ତାହାଙ୍କୁ କେଉଁ ନୀତି ଶିଖାଇବୁ ପୁଣି
ଅମାତରେ ଚୋର ଧନ ଜାଳ ଗଲ୍ପ ଜାଣି ।
ଏହା ଶୁଣି ଧୃତରାଷ୍ଟ୍ର ହୋଇଲାକ ତୁନି
ହୃଦ ବ୍ୟାକୁଳେ ବହଇ ଯେସନେ ବହନ୍ତି ।
ପୁଣି ଯୁଧିଷ୍ଠିରଙ୍କୁ ସେ କଲ୍ୟାଣ କରିଲା
ଚିରାୟୁ ହୁଅ ବୋଲିଣ ଆସ୍ଥାନୁ ଉଠିଲା ।
କଣ୍ଠେ ରୁଦ୍ରାକ୍ଷ ମାଳା ନାଭିପାଏ ପଡ଼
କର୍ଣ୍ଣରେ ତାମ୍ର କୁଣ୍ଡଳ ଲମ୍ବ ଅଛି ଜଡ଼ ।
କାଖେ ମୃଗଛାଲି କରେ କମଣ୍ଡଳୁ ଶୋହେ
ତପୋଧନ ରୂପଗୋଟି ଜଗଜ୍ଜନ ମୋହେ ।
ଭୀମସେନ ବୋଲେ ତାତ ବୃଦ୍ଧଦଶା ପ୍ରାପ୍ତେ
ବଂଶବର୍ଗ ଲେଖି ତପୋଧନ ସ୍ଥାପ୍ୟ ଯାଏ ।
ଧୃତରାଷ୍ଟ୍ର ଗାନ୍ଧାରୀର ଏ ବେଶ ଦେଖିଣ
ଯୁଧିଷ୍ଠିଙ୍କି କୁନ୍ତୀଦେବୀ କହେ ଏ ବଚନ ।
ବାବୁ ଆମ୍ଭେ ତିନି ଯେ ଗାନ୍ଧାରୀ ମାଦ୍ରୀ କୁନ୍ତୀ
ମାଦ୍ରୀ ସ୍ୱାମୀ କାର୍ଯ୍ୟ କରି ହେଲା ପୁଣ୍ୟବନ୍ତୀ ।
ଗାନ୍ଧାରୀ ଯାଉଛି ବାନପ୍ରସ୍ଥେ ବଂଶ ତେଜ
ମୁହିଁ ଏଥି ଥାଇ କପାଁ ପାପେ ଥିବ ମଜ ।
କାଳ୍ପିତ କାଳିକୁ ଆମ୍ଭେ ଅଟୁ ତେନ ସଖୀ
ସେ ଦୁଃଖ ପାଇଲେ ଆମ୍ଭେ କପାଁ ହେବୁ ସୁଖି
ମୋତେ କହି ନ ବୋଲ ମୁଁ ଯିବଇଁ ଅବଶ୍ୟ
ଗାନ୍ଧାରୀଙ୍କ ତୁଲେ ମୋର ଜାଣ ବନବାସ ।
ମୋର ପୁତ୍ର ହୋଇ ତୁମ୍ଭେ ବଡ଼ ବିଚକ୍ଷଣ
ତୁମ୍ଭଙ୍କୁ ବୁଝାଇବାକୁ ମୁହିଁ କି ଭାଜନ ।

ବାବୁ ଯେତେକାଳ ଯାଏ ଥିବ ତୋର କାୟ
ସହଦେବ ନକୁଳକୁ ହୋଇବୁ ସହାୟ ।
ବ୍ୟାକୁଳ ହେଲେ ପାଣ୍ଡବ କୁନ୍ତୀ ସଙ୍ଗ ଦେଖି
ଅଶ୍ରୁ ଛଳଛଳ ପଞ୍ଚପାଣ୍ଡବଙ୍କ ଆଖି ।
ଆମ୍ଭଙ୍କୁ ଘେନ ମାତା ଗୋ ବନସ୍ତେ ବୁଲିଲୁ
କନ୍ଦମୂଳ ଖାଇ ମାଗୋ ଦୁଃଖେ ଦିନ ନେଲୁ ।
ଗାନ୍ଧାରୀ ଦେବୀ ଅନେକ କଲ ସୁଖଭୋଗ
ତୁମ୍ଭ ଦୁଃଖ ଦେଖି ସୁଖ ନ କଲ ସେ ତ୍ୟାଗ
କୁନ୍ତୀ ବୋଇଲେ ସେସିନା ନିର୍ଭୟା ହୋଇଲେ
ଶତପୁତ୍ର ଉପୁଜାଇ ଅପୁତ୍ରକ ହେଲେ ।
କୁନ୍ତୀଙ୍କୁ ବୋଲନ୍ତି ପୁତ୍ରେ ବିନୟ ବଚନେ
ଆଗୋ ମାତ ଆମ୍ଭଙ୍କୁ ତୁ ଛାଡ଼ିଯିବୁ କେଣେ ।
ଆମ୍ଭ ସଙ୍ଗତରେ କେତେ ଲଭିଅଛୁ ଦୁଃଖ
ଭୋଗ କଲାବେଳେ କପାଁ ଆମ୍ଭଙ୍କୁ ଉପେକ୍ଷ ।
ଶୁଝି ନ ପାରିବୁ ଯେତେ ପୋଷିଥିବା ଋଣ
ପୁତ୍ରରେ ଲେଖା ନୋହିଲୁ କର ମନ୍ଦପଣ ।
ଭିକ୍ଷାଅନ୍ନେ କେତେ କଷ୍ଟେ ଆମ୍ଭଙ୍କୁ ପାଳିଲୁ
ସମ୍ପଦ କାଳରେ କାହିଁପାଇଁକି ମୁରୁଛୁ ।
ବାଳକାଳେ ଆମ୍ଭର ଗୋ ତାତ ହେଲେ ନଷ୍ଟ
ତୋହର ପ୍ରସାଦେ ମାତ ପାଇନାହୁଁ କଷ୍ଟ ।
ଆମ୍ଭମାନଙ୍କ ନିମନ୍ତେ କରିବାକୁ ଚିନ୍ତା
କାହା ଆଗେ ପ୍ରକାଶିବୁ ଦୁଃଖ ଆଗୋ ମାତା ।
ଆମ୍ଭଠାରୁ କାହିଁପାଇଁ ମନ ନେଲୁ କାଢ଼ି
କେହ୍ନେ ଦେହ ଧରିବୁ ତୁ ସହଦେବେ ଛାଡ଼ି ।
କୁନ୍ତୀ ବୋଇଲେକ ବାବୁ ଶୁଣ ତୁ ଯୁଧିଷ୍ଠି
ଏକାନ୍ତେ କହିବି ତୋତେ ଆଗ କଥାଗୋଟି ।
ଅନ୍ଧ ଅନ୍ଧୁଣୀଏ ବନେ ବୁଲିବେ କେମନ୍ତେ
କଷ୍ଟପାଇ ଶାପ ବାବୁ ପୁଣି ଦେବେ ତୋତେ
ଯେତେବେଳେ ପଥହୁଡ଼ ଲଭିବେ ଏ କଷ୍ଟ
ଯାଙ୍କ ସଙ୍ଗେ ଥାଇ ମୁହିଁ କଢ଼ାଇବି ବାଟ ।
ମୁହିଁ ଜାଣ ଏହାଙ୍କର ଭୁଲେ ଯାଉଥିଲେ
ଅପାର ମଙ୍ଗଳ ବାବୁ ହୋଇବ ନା ଭଲେ ।
ଯେତେବେଳେ ଲୋଡ଼ୁଥିବେ ଏହୁ ଅଳ୍ପପାଣି
ମୁହିଁ ପୁଣ ଲୋଡ଼କର ଦେଉଥିବି ଆଣି ।
ମାତାର ଏପରି ବାକ୍ୟ ଶୁଣିଣ ଯୁଧିଷ୍ଠ
ଛାଡ଼ିଲେକ ମନବ୍ୟଥା ଲଭିଲେକ ତୁଷ୍ଟି ।

ପିନ୍ଧି କଷାବସନ ଯେ ଦେହେ ଉତ୍ତରୋଳ
ଶିରେ ଜଟା ବାନ୍ଧି କରେ ମୃଗଚର୍ମ ଧରି ।
ଧୃତରାଷ୍ଟ୍ର ଗାନ୍ଧାରୀର ସଙ୍ଗେ କୁନ୍ତୀ ଗଲେ
କଲ୍ୟାଣ କରଣ ତହୁଁ କୁରୁରାଜ ଚଳେ ।
ଏମନ୍ତେ ସ୍ୱରୂପେ ଯହୁଁ ଦେଖିଲେ ତାହାଙ୍କୁ
ଗାନ୍ଧାରୀ ଯେ କୋଳକଲେ ସେ କୁନ୍ତୀଦେବୀଙ୍କୁ
ଆଦର ବୋଇଲେ ତୁ ଗୋ କପାଁ ଯିବୁ ବନ
ସୁଖକାଳେ ପୁତ୍ରଙ୍କୁ ତୁ ଛାଡ଼ିବୁ କେସନ ।
କୁନ୍ତୀଦେବୀ ବୋଇଲେ ମୁଁ ଅଟେ ବଡ଼ଦୁଃଖୀ
ପୁଅଙ୍କର ଅବସ୍ଥା ମୁଁ ନ ପାରଇ ଦେଖି ।
କୁମାରୀକାଳେ କର୍ଣ୍ଣଙ୍କୁ ମୁହିଁ ଜାତକଲି
ଲଜ୍ଜାର ନିମନ୍ତେ ନେଇ ଜଳେ ମେଲିଦେଲି ।
କୃତାର୍ଥ ଜୀବନ ମୋର ହେଲା କର୍ଣ୍ଣଯୋଗେ
ସେ ପୁତ୍ରଙ୍କୁ ତ ମାଇଲ ମୋର ଅନୁରାଗେ ।
ପର୍ଶୁରାମଠାରୁ ଶିଖିଥିଲା ଶସ୍ତ୍ର ଯେତେ
ଧନ୍ୟ ଧନ୍ୟ କର୍ଣ୍ଣଙ୍କୁ ଯେ କରନ୍ତି ଜଗତେ ।
ଅର୍ଜୁନ ସମାନେ ଯାର କର୍ଣ୍ଣଙ୍କୁ ଯେ ଲେଖି
ହୁଅଇ ଆନନ୍ଦ ହୃଦପଦ୍ମ ମୋର ଦେଖି ।
ତାହାକୁ ବଜ୍ର କଉଚ ଅମୃତ କୁଣ୍ଡଳ
ମାଗନ୍ତେ ସେ ଦେଇଦେଲା ନେଲେ ଆଖଣ୍ଡଳ
ଏଡ଼େ ସତ୍ୟବନ୍ତ ମୋର ଅଟେ ଯେଉଁବଳା
ଅଗାଧ ସମୁଦ୍ରେ ବୁଡ଼ାଇଲା ମୋର ଭେଳା ।
ପାତାଳକୁ ପଶିଗଲା ତାର ରଥଗୋଟି
ଅନ୍ୟାୟେ ମାଇଲା ତାକୁ ପାପିଷ୍ଠ କିରୀଟୀ
ଏପରି ମୁଁ ପୁତ୍ରକଷ୍ଟ ଶୁଣିଅଛୁ ଯେତେ
ଶୋକ ସମ୍ଭାଳଣ ମୁହିଁ ରହିବି କେମନ୍ତେ ।
ଏହୁ ଦୁଃଖମାନ ମୁହିଁ ସହି ନ ପାରଇ
ଦିବାନିଶି କର୍ଣ୍ଣଙ୍କୁ ମୁଁ ସ୍ୱପନେ ଦେଖଇ ।
ପୂର୍ଣ୍ଣଚନ୍ଦ୍ର ପରି ଦିଶେ ତାର ମୁଖଗୋଟି
ସେ ପୁତ୍ର ବିହୀନେ ମୁହିଁ ହେବି କେଉଁ ତୁଷ୍ଟି
ହିଡ଼ିମ୍ବି ନନ୍ଦନ ମୋ ଘଟୋତ୍କଚ ମଲା
ପାଞ୍ଚାଳୀକୁମର ସହ ଅଭିମନ୍ୟୁ ଗଲା ।
କୁନ୍ତିଭୋଜର ନନ୍ଦନ ପଡ଼ିଲା ମୋ ଭାଇ
ଏହାଙ୍କପାଇଁ ମୁଁ ତୀର୍ଥ ବାସ କରିବଇଁ ।
ଯୁଧିଷ୍ଠି ବୋଇଲେ ମାତ କପାଁ ପାଅ ବ୍ୟଥା
ବେଳବେଳ କହୁଅଛ ଯେ ଅମାଙ୍କ କଥା ।

କୃଷ୍ଣ ମଧ୍ୟପାନ୍ଥ ପଟଣେ ଆସିବାର ବେଳେ
ବିଦୁର ଘରେ ଯେ ରହିଥିଲେ ଗନ୍ଧମାନେ ।
କୃଷ୍ଣଙ୍କୁ ବୁଝାଇ ଲେଖେ ନ କହିଲ ଭୂପ
ଯୁଦ୍ଧ କରାଇ ଆମ୍ଭଙ୍କୁ କରୁ ଏବେ ଦ୍ରୋହୀ ।
ଆପେ ଭିଆଇ ପଣ୍ଡୁକୁ ଦେଉ ପୁଣି ଦୋଷ
ଅସମର୍ଥ ମାତା ତୋତେ କହିବ ମୁଁ କସ ।
କୁନ୍ତୀ ବୋଇଲେ ବାବୁ ତୁ ନ କର ସେମାନ
ତୋର ତାତ ଶୋକଭାରେ ଶରୀର ମୋ କ୍ଷୀଣ
ବାବୁ ମାତା ପିତା ଜାଣି ସର୍ବଦା ଯେ ଥାଇ
ଭବନୀ ବୃକ୍ଷ ପର୍ଯ୍ୟନ୍ତ ମନୁଷ୍ୟର ଦେଖି ।
ମୁହିଁ ଜନନୀ ପୋଷନ୍ତୁ ମୋତେ ତୁମ୍ଭେ ଯାହା
ବଢେଇକ ମାଗୁଅଛୁ ପ୍ରତିପାଳ ତାହା ।
ବାବୁରେ ପାଞ୍ଚାଳୀ ତୋର ଅଟଇ ସ୍ୱବଶ
ସ୍ତ୍ରୀପ୍ରାୟ ଖଟିଥାଇ ତୋତେ ଦିବାନିଶି ।
ଅନେକ ଦୁଃଖ ତାହାକୁ ପଡ଼ିଲା ଯେ ବନେ
ପାଞ୍ଚଗୋଟି ପୁତ୍ର ନାଶଗଲେ ଏକଦିନେ ।
ଯେସନେ ପୁତ୍ରଙ୍କ କଥା ନ ପଡେ଼ ତା ମନେ
ତେସନ କର ପାଳିବ ତାକୁ ପାଞ୍ଚଜଣେ ।
ପିତା ପୁତ୍ର ଭାଇ ତାର ପଡ଼ିଲେ ସମରେ
ବୋଧିକଲେ ନ ଧରିବୁ କଦାପି ମନରେ ।
ପୁତ୍ରମାନଙ୍କୁ ଏପରି କହିଣ ଯେ କୁନ୍ତୀ
ଦ୍ରୌପଦୀଙ୍କୁ ପୁଣ ନାନାମତେ ବୁଝାଉନ୍ତି ।
ଆଗୋ ମୋର ମାତା ନ କରିବୁ ଶୋକଚିନ୍ତା
ସମସ୍ତଙ୍କ ରାଣୀ ତୋର ନାହିଁ ତ ଅହନ୍ତା ।
ପାଞ୍ଚପତି ଅଟନ୍ତି ତୋ ଜଗପାଳ ଜାଣି
ସୁଖେ ରାଜଶିରୀ ଭୋଗକର ଗୋ ଦୂଲଣୀ ।
ପୃଥିବୀର ରାଜା ଅଟେ ଯୁଧିଷ୍ଠି ରାଜର୍ଷି
ତାର ପାଟରାଣୀ ତୁଗୋ ଅଟୁ ସୁକ୍ଷ୍ମକେଶୀ ।
ଯେତେ ବଡ଼ ଖ୍ୟାତି ତୋର ହୋଇଲା ସ୍ତ୍ରୀଜନ୍ମେ
ଏଣ୍ଡେ ମହିମା ପାଳିବ କେତ୍ରୁ ନାରୀଧର୍ମେ ।
କୁଳବଧୂ ଅଟୁ କେବେ ନ କରିବୁ ଚିନ୍ତା
ବଇବର ପତି କଏ କରିବ ଅନ୍ୟଥା ।
ପତିଙ୍କର ମନ ଜାଣି ସେବା କରୁଥିବୁ
ପୁତ୍ରଶୋକ କେତେବେଳେ ମନେ ନ ଆଣିବୁ
ଆଉ ଏକଗୋଟି କଥା କହୁଅଛୁ ତୋତେ
ସହଦେବ ଯେଉଁପରି ନ ସୁମରେ ମୋତେ ।

ଏହିପରି କହିଣ ଯେ ପଣ୍ଡୁ ରାଜା ରାଣୀ
ଦ୍ରୌପଦୀଙ୍କୁ ଆଲିଙ୍ଗନ କଲେ ପୁଣ ପୁଣି ।
ଗାନ୍ଧାରୀ କୁନ୍ତୀ ବିଦୁର ଧୃତରାଷ୍ଟ୍ର କୁଲେ
ସଞ୍ଜୟ ସହିତ ପଞ୍ଚ ବନକୁ ଗମିଲେ ।
ସଞ୍ଜୟ ବିଦୁର ଆଗେ କଡ଼ାନ୍ତି ଯେ ବାଟ
ସନ୍ଧୀ କରଧରି ଚାଲିଥାଏ ଧୃତରାଷ୍ଟ୍ର ।
ଗାନ୍ଧାରୀ ଯେ କୁନ୍ତୀ କରଧରି ଚାଲିଥାଏ
ରାଜ୍ୟ ତେଜି ଚାଲନ୍ତି ଯେ ବାନପ୍ରସ୍ଥ ପ୍ରାୟେ ।
ରାଜପଥ ତେଜି ଚଳିଗଲେ ବନମାର୍ଗେ
ଦେଖିବାକୁ ବହୁଜନ ଆସନ୍ତି ଉଦ୍ବେଗେ ।
ଶୋକେ ଅଶ୍ରୁ ପୂର୍ଣ୍ଣ ହୁଏ ସମସ୍ତଙ୍କ ଆଖି
ଧୈର୍ଯ୍ୟଧରି ନ ପାରନ୍ତି ନୟନରେ ଦେଖି ।
ଗାନ୍ଧାରୀର ମୁଖେ ସଦା ଅଛି ଯେ ପଟଳ
ଚକ୍ଷୁକୁ ନ ଦିଶେ କେବେ ଧୃତରାଷ୍ଟ୍ରଙ୍କର ।
ଫଳମୂଳ ଜଳ ବନେ ପାଇବେ ଏ କାହିଁ
ଅତିବୃଦ୍ଧ କାହାର ଯେ ତିଳେ ବଳନାହିଁ ।
ସର୍ବଦା ଏ ଶୋଇଥିଲେ ଦିବ୍ୟ ପଲଙ୍କରେ
କେଉଁପରି ଭୂମିଶଯ୍ୟା କରିବେ ବନରେ ।
କଣ୍ଟା ଡିପ ଖାଲ ବାଟ ନ ଜାଣିବେ କଷ୍ଟ
ପୁଣି ଏ ବିଦୁର ଯାଙ୍କ ନ ପାରଇ ମୁର୍ଚ୍ଛି ।
ଧୃତରାଷ୍ଟ୍ର କେଉଁପରି ଏ ଦୁଃଖ ସହିବେ
ଦୁଃଖୀଙ୍କାକୁ ମୁର୍ଚ୍ଛି କେଉଁପରି ଜନ ନେବେ ।
ଏହିପରି କହି ଲୋକେ ପୁରକୁ ଗମିଲେ
ପାଞ୍ଚଜଣଯାକ ମହାବନରେ ପଶିଲେ ।
ଜୟ ତୁ କେଶବ ହରି ଜୟ ନାରାୟଣ
ସର୍ବଭୂତନାଥ କୃଷ୍ଣ ଅନାଦି କାରଣ ।
ସତତ ଜୟ ମୋହର ତୋର ପାଦପଦ୍ମେ
ଯେସନ ସ୍ୱାମୀ କଳଙ୍କ ଗୁପିଲେକ ଛନ୍ଦେ ।
ନବଜଳଦ ତୋଳା ଲଳିତ ବରଣ
ଅଚଳ ମହିମାମେରୁ ସୁନ୍ଦର ନୟନ ।
ଅକଳନ୍ତ ସାଗରେ ମୁଁ ପଶିଲି ନ ଜାଣି
ମହାଦୁସ୍ତରୁ ନିସ୍ତାର କର ଚକ୍ରପାଣି ।
ସ୍ନାନେ ଭୋଜନେ ଶୟନେ ମୁଁ ଅନୁଭବତେ
ହରିହୁଁ ଆନ ନ ଭଜେ ମୋର ହୃଦଗତେ ।
ବୁଝିଲି ଏହି ସଂସାର ଚକ୍ଷପଟ ପ୍ରାୟ
ଜଳବିମ୍ବ ସମ ଏହି ମନୁଷ୍ୟର କାୟ ।

କୃଷ୍ଣ ଲଖେଁ ରହିଥାଉ ମୋର ସଦା ବୁଦ୍ଧି
ଶାରଳା ଦାସ ସେବଇ କରୁଣାବାରିଧି ।

## କୁନ୍ତୀ ଗାନ୍ଧାରୀ ସହିତ ଧୃତରାଷ୍ଟ୍ର ସଞ୍ଜୟ ଓ ବିଦୁରର ବାନପ୍ରସ୍ଥାଶ୍ରମେ ଗମନ ଓ ତୀର୍ଥଯାତ୍ରା

ଅଗସ୍ତିଙ୍କୁ ବୈବସ୍ୱତ ମନୁ ପୁଚ୍ଛାକଲେ
ଧୃତରାଷ୍ଟ୍ର ଗାନ୍ଧାରୀ ଯେ ବିପିନେ ପଶିଲେ ।
କାହିଁ ରହି ସେ କେମନ୍ତ କୃତ୍ୟକଲେ କହ
ସଙ୍ଗେ ଅଛନ୍ତି ତ କୁନ୍ତୀ ବିଦୁର ସଞ୍ଜୟ
ବଦନ୍ତି ଅଗସ୍ତି ମୁନି କୁମ୍ଭଋଷି ବିଜ୍ଞା
ଶୁଣ ତୁ ହେ ମହାରାଜା ଧର୍ମେ ମତିଶୋଭା ।
କାର୍ତ୍ତିକମାସ ଶୁକ୍ଳପକ୍ଷ ଗୁରୁବାର
କୃତ୍ତିକାଅନ୍ତେ ରୋହିଣୀ ଭୋଗ ଦଣ୍ଡ ତେର
ବାଳବ ନାମେ କରଣ ଶୁଭ ନାମେ ଯୋଗ
ତେଇଶ ଦିନ ସେ ତୁଳ ସଂକ୍ରାନ୍ତି ଭୋଗ ।
ବେଳ ଘଟିଦଣ୍ଡେ ପଡ଼ି ବୃହସ୍ପତି ବେଳା
ବାନପ୍ରସ୍ଥକୁ ଗମିଲ୍ଲ ଅମ୍ବିକାର ବଳା ।
ଅନ୍ଧ ଅନ୍ଧୁଣୀ ସେ ବନେ କଷ୍ଟ ନ ଚିହ୍ନନ୍ତି
ଯେଉଁଫଳ ଦେହେ ଲାଗେ ତାହା ସେ ଭୁଞ୍ଜନ୍ତି
ଆପେ ଯାହା ଅରଜିବ ଭୁଞ୍ଜିବ ଅବଶ୍ୟ
କଲା କର୍ମକୁ ଲଭିବ ଆନର କି ଦୋଷ ।
ଧୃତରାଷ୍ଟ୍ର କୁଟେ ଯୁଧିଷ୍ଠିର ଯାଇଥିଲେ
ଅନ୍ତେ ସେ ଫଳଲା ଧୃତରାଷ୍ଟ୍ର ବନେ ଗଲେ ।
ତପସ୍ୱୀ ବେଶେ ରାଜ୍ୟରୁ ବାହାର ହୋଇଲେ
ବହୁଦେଶ ନାନା ଗିରି କନ୍ଦରେ ଭ୍ରମିଲେ ।
କନ୍ଦମୂଳ ପତ୍ର ଭକ୍ଷି ନିଅନ୍ତି ସେ ଦିନ
ଦିବସେ ଭ୍ରମଣ ରାତ୍ରେ ପତ୍ରରେ ଶୟନ ।
ପଞ୍ଚମାସ ସେ ଗହନବନ ଗଲା ଗଲା
ପ୍ରବେଶ ହେଲେ ଯାହାକୁ ଗୟାତୀର୍ଥ ବୋଲି
ପାତାଳଗାମିନୀ ଶୁଭଭଦ୍ରା ନାମେ ନଈ
ବହଇ ସେଠାରେ ସର୍ବେ ସ୍ନାନକଲେ ଯାଇ ।
ବୋଇଲେ ବ୍ରହ୍ମାନନ୍ଦିନୀ ଫଲ୍‌ଗୁ ତୁହେ ସାକ୍ଷୀ
ବନ୍ଧୁ କୁଟୁମ୍ବ ସୋଦର ପାଇଁ ମୁହିଁ ଦୁଃଖୀ ।
ପୁଣ୍ୟଭଦ୍ରା ତୀର୍ଥେ ଥିଲା ରାମଘାଟ କୁଣ୍ଡ
ଶୋକ ଉଦ୍ଧାର ତହିଁରେ ଦେଲେ ବାଲିପିଣ୍ଡ

ଭୂରିଶ୍ରବା ବାହ୍ଲୀକ ଯେ ଶିଷ୍ଟ ସୋମଦତ୍ତ
ଶଲ୍ୟ କର୍ଣ୍ଣ ଶକୁନି ଯେ ମମ ପୁତ୍ର ଶତ ।
ବିରାଟ ଦ୍ରୁପଦ ଅଭିମନ୍ୟୁ କୁନ୍ତିଭୋଜ
ଏମାନଙ୍କ କୁଳେ ଭ୍ରାତା ଘୋଷ ଯେ ଆତ୍ମଜ
ଜଳସ୍ଥଳେ ପଡ଼ିଲେ ଯେତେକ ସଇନ
ସଭିଙ୍କି ନିମନ୍ତେ ଧୃତରାଷ୍ଟ୍ର ପିଣ୍ଡ ଦେଲ ।
ତଥନ୍ତେ ପାଣ୍ଡବେ ଆସି ସର୍ବ କରତଳ
ବାଲିପିଣ୍ଡ ଭକ୍ଷି ମୋକ୍ଷ ହୋଇଲେ ସକଳ ।
ଗୟା ଶ୍ରାଦ୍ଧରେ ଉଭୟବଂଶ ଯେତେ ଲୋକ
ମୁକତି ଗତି ପାଇଣ ହୁଅନ୍ତି ସେ ମୋକ୍ଷ ।
ପିତୃକାର୍ଯ୍ୟ କଲେ ତହିଁ ବିଦୁର ସଞ୍ଜୟେ
ଗୟାଶ୍ରାଦ୍ଧ କଲେ କୁନ୍ତୀ ଗାନ୍ଧାରୀ ଏ ଦୁହେଁ
ସତ୍ୟ ଉଚ୍ଚାରିଲେ ଗଦାଧର ପରସନ୍ନେ
ତରଶ ଦିନ ରହିଲେ ଫଲ୍‌ଗୁ ତୀର୍ଥସ୍ଥାନେ ।
ପୁଣି ବିଷ୍ଣୁ ଧନୁ ବେନି ମାସର ଅନ୍ତରେ
ପ୍ରୟାଗ ତୀର୍ଥେ ପ୍ରବେଶ ହେଲେ ଗଙ୍ଗାଘାଟରେ
ଗଙ୍ଗା ଯମୁନା ଯେ ସରସ୍ୱତୀ ତ୍ରିନଧାର
ବହେ ଯହିଁ ତହିଁ ସ୍ନାନ କଲେକ ସଭର ।
ବେଦ ଅନୁଯାୟୀ ତହିଁ ପିଣ୍ଡଦାନ କଲେ
ମାଧବ ପ୍ରସନ୍ନେ ତହିଁ ମାସେକ ରହିଲେ ।
କଳ୍କୀ ନାମେ ରାଜା ଆସି ସେଠାରେ ପ୍ରବେଶି
ବୋଧେ ଧୃତରାଷ୍ଟ୍ର ତୁହି ଅଟୁ ପୁଣ୍ୟ ଅଂଶୀ ।
ଅତମୋକ୍ଷ ପ୍ରେତକୁ ପିଣ୍ଡଦାନେ ମୁକ୍ତକର
ପୂର୍ଣ୍ଣ କରିବ ଏ ମନୋବାଞ୍ଛା ତୀର୍ଥବର ।
ପୂର୍ବେ ବୈଶ୍ରବଣ ବୋଲି ରାଜା ଏକ ଥିଲା
ରାଜ୍ୟଭୋଗ ଛାଡ଼ି ସେହି ତୀର୍ଥ ସେବାକଲା ।
ଭଗୀରଥ ପୁରୁରବା ଭରତ ଯଯାତି
ତୀର୍ଥ ସେବାକରି ସେହି ପାଇଲେ ମୁକତି ।
ରାଜ ଭୋଗକଲେ ନାନା ପାତକ ଘୋଟଇ
ଅଇଶ୍ୱର୍ଯ୍ୟ ଘେନେ ସତ୍ୟ ଧର୍ମ ନ ଗଚ୍ଛଇ ।
ସେ ପାପକୁ ତୀର୍ଥ ବ୍ରତ ବିନା ଆନ ନାହିଁ
ତୀର୍ଥ ଦର୍ଶନେ କୃତାର୍ଥ କର ନିଜ ଦେହି ।
ତହୁଁ ଧୃତରାଷ୍ଟ୍ର ପୁଣ ଆନବନେ ଗଲେ
ବାଟେ ନାରଦ ମୁନିଙ୍କୁ ପର୍ବତେ ଦେଖିଲେ ।
ଧୃତରାଷ୍ଟ୍ର ଗାନ୍ଧାରୀ ଯେ କୁନ୍ତୀ ଜଣ ତିନି
ସଞ୍ଜୟ ବିଦୁର କଲେ ଚରଣେ ବନ୍ଦନା ।

ନାରଦ ବୋଇଲେ ତୁମ୍ଭ ଯଶ ଅରଜିଲ
ଯେଣୁ ଧୃତରାଷ୍ଟ୍ର ତପେ ବନକୁ ଆଇଲ ।
ସ୍ୱର୍ଗରେ ପାଣ୍ଡୁଙ୍କୁ ପୁଣ ଦେଖିବୁ ତୁ ଯାଇ
ତାରେ ଯିବାକୁ ଅଛଇ ସେହୁ ବାଟ ସୃହିଁ ।
ଅସଂଖ୍ୟ ଯେ ଲୋକ ତହିଁ ଜାଣ ଠାବନାହିଁ
ଅନର୍ଗଳ ଦ୍ୱାର ବାବୁ ଯିବୁ ରହି ରହି ।
ମୃତ ପୌତ୍ର ଭାରଯା ଏ ନୂତନ୍ତ କାହାର
ଦେଖୁ ଦେଖୁ ସମସ୍ତେ ତ ଗଲେ ପ୍ରାଣ ହାର
ଏ ମର୍ତ୍ତ୍ୟମଣ୍ଡଳେ ରହି କସ କ୍ଲେଶ କଲୁ
ଲୋଭ ମୋହ ଅହଙ୍କାର ଶୋକରେ ବୁଡ଼ିଲ
ପାଞ୍ଚଇନ୍ଦ୍ରିୟ ଅଟନ୍ତି ଜାଣ ଭୋଗକାରୀ
ତେଣୁ ସଦଜ୍ଞାନ ବାବୁ ରହେ ଅପସରି ।
ସବୁ ତେଜ ଯେବେ ନାନା ତୀର୍ଥ ବ୍ରତ କରି
ତେବେ ଏଥେ ମୋହ-ଜଳ ହୁଅଇ ସଂହର ।
ଅନେକ ଜ୍ଞାନ ତାହାଙ୍କୁ କହିଲେକ ଋଷି
ପୁଣି ଯେ ବ୍ୟାସ ପ୍ରବେଶ ହୋଇଲେକ ଆସି
ବ୍ୟାସଙ୍କୁ ଦେଖି ପ୍ରଣାମ କଲେ ଧୃତରାଷ୍ଟ୍ର
ହେ ପିତା ତୁମ୍ଭର ଥାଉଁ ମୋର ଏଡ଼େ କଷ୍ଟ
ବ୍ୟାସ ବୋଇଲେ ତୁ ବାବୁ ଭଲ କାର୍ଯ୍ୟ କଲୁ
ଗୃହବାସ ତେଜ ଯାହା ବନକୁ ଆଇଲୁ ।
କ୍ଷତ୍ରିୟଙ୍କୁ ସଂଗ୍ରାମରେ ମୃତ୍ୟୁ ଏକ ଗତି
ଅନ୍ୟ ସମୟରେ ମଲେ ନୁହଇ ମୁକତି ।
ଜନ୍ମହିଁ ତୋହର ବାବୁ ପୁଣି ଚକ୍ଷୁନାହିଁ
ତେଣୁ ବାବୁ ରଣ ଯଜ୍ଞ ପାଇବୁ ବା କାହିଁ ।
ଚିନ୍ତା ତୁ ଉପେକ୍ଷି ଏବେ ଥାଅ ବନବାସେ
ଏମନ୍ତ ବୋଲି କହିଲେ ଯହୁଁ ମୁନି ବ୍ୟାସେ
ନାରଦ ସେ ପର୍ବତରୁ ଗଲେ ପାଞ୍ଚଦିନେ
ଗଙ୍ଗାର କଳେ ପ୍ରବେଶ ହେଲେ ପାଞ୍ଚଜଣେ
ନାନା ତରୁମାନଙ୍କରେ ବନ ଶୋଭାବନ
ମୃଦୁ ମନ୍ଦ ସମୀରଣ କରେ ସଞ୍ଚରଣ ।
ବକୁଳ ମାଧବୀ ନାଗକେଶ୍ୱର ରସାଳ
ମଣ୍ଡଳରେ ରବକରି ଭ୍ରମନ୍ତି ଭ୍ରମର ।
ଅତି ମନୋହର ତହିଁ କୋକିଳର ବାଣୀ
ତାହା ଶୁଣି ଉପେକ୍ଷିଲେ ଶୋକ ପଞ୍ଚପ୍ରାଣୀ ।
ବହୁ ଜୀବ ଜନ୍ତୁ ସୁଖେ କ୍ରୀଡ଼ନ୍ତି ସେ ବନେ
କରବର ମୃଗହସ୍ତି ବାହ୍ମଟିଆମାନେ ।

ନାନା ସୁରମ୍ୟ ପଦାର୍ଥେ ହୋଇଣ ସନ୍ତୁଷ୍ଟ
ସ୍ତ୍ରୀହ ବସ୍ତ୍ର ବେ ବନେ ରହି ଧୃତରାଷ୍ଟ୍ର ।
ଗଙ୍ଗାକୂଳରେ ସେ ପର୍ଣ୍ଣକୁଟୀ ନିର୍ମାଣିଲେ
ଫଳ ମୂଳ ଖାଇ ତହିଁ ଆନନ୍ଦେ ରହିଲେ ।
ସ୍ନାନଦାନ ତର୍ପଣ ନିତ୍ୟକର୍ମ ଯେ ସାରନ୍ତି
ଯାହା ମିଳେ ତା ଉପରେ ଆହାର କରନ୍ତି
ପୂର୍ବରୁ ସେ ଦେଖା ଦେଇ ବ୍ୟାସ ଯାଇଥିଲେ
ଇନ୍ଦ୍ରପ୍ରସ୍ଥଠାରେ ଯାଇ ପ୍ରବେଶ ହୋଇଲେ ।
ଯୁଧିଷ୍ଠିରଙ୍କ ସଭା ହୋଇଥିଲା ଯେ ଗହଳ
ବ୍ୟାସଙ୍କୁ ଦେଖି ତକ୍ଷଣେ ଉଠିଲେ ସକଳ ।
ସମସ୍ତଙ୍କ ସଙ୍ଗେ ଯୁଧିଷ୍ଠିର ଧର୍ମରାଜା
ବ୍ୟାସଙ୍କର ପଦ୍ମପାଦେ କଲେ ଦିବ୍ୟପୂଜା ।
ଯୁଧିଷ୍ଠିରଙ୍କି ଡାକି ତହୁଁ ମହର୍ଷି ବୋଇଲେ
ଧୃତରାଷ୍ଟ୍ରେ ଅଇଲଇଁ ଦେଖି ଗଙ୍ଗାକୂଳେ ।
ଗାନ୍ଧାରୀ କୁନ୍ତୀ ବିଦୁର ସଞ୍ଜୟ ସହିତେ
ସେଠାରେ ଅଛନ୍ତି ବେଗି ଅଇଲଇଁ ନେଦେ
ଶୁଣି ଯୁଧିଷ୍ଠିର ବିନୟେ ବୋଇଲେ ବ୍ୟାସଙ୍କୁ
ଦୟାକରି ମୋତେ ବାରେ ଦେଖାଅ ତାହାଙ୍କୁ
ଜୟ ଜୟ ରାମଚନ୍ଦ୍ର ଅନାଦି ଅଚ୍ୟୁତ
କୁତୂହଳେ ଜନ୍ମ ଦେବ କରୁ ସ୍ଥିତି ଅନ୍ତ ।
କୃଷ୍ଣ ନାମ ଶୁଣି ଭୟ ପାନ୍ତି ଯମଥାଟ
ନିଜ ମରଣକୁ ନାଥ ରଖିଅଛୁ ବାଟ ।
ମାୟାରୂପେ ଜାତ ହୋଇ ଦୁଷ୍ଟ ତ ସଂହରୁ
ରକ୍ଷାକର ମୋତେ ଦେବ ଏ ମାୟା ସଂସାରୁ
ଜନ୍ମେ ଜନ୍ମେ ସୁଜ୍ଞଜନେ ଭଜ ରାମ ପାଦ
ବିଷୟ ବିଷକୁ ଏକା ସେହି ସିନା ଗଦ ।
ଶ୍ରୀକୃଷ୍ଣର ପଦ୍ମପାଦେ କରଣ ଭକତି
ଶାରଳା ଦାସ ଇଛଇ ନିର୍ବାଣ ମୁକତି ।

---

## ଯୁଧିଷ୍ଠିରଙ୍କର ସସୈନ୍ୟେ ଧୃତରାଷ୍ଟ୍ରଙ୍କ ନିକଟକୁ ଗମନ ଓ ବିଧବା ନାରୀ-ମାନଙ୍କର ସ୍ୱର୍ଗ ପ୍ରାପ୍ତି

ବଦନ୍ତି ଅଗସ୍ତି ଶୁଣ ମନୁ ବ୍ରହ୍ମବେତ୍ତା
ମହାଭାରତର ଏହି ଆଶ୍ରମିକ କଥା ।
ବ୍ୟାସବୋଇଲେହେ ତେବେ ଯିବାକୁଲବନେ
ତହୁଁ ସସୈନ୍ୟେ ପାଣ୍ଡବେ ଗଲେ ପାଞ୍ଚଜଣେ

ଶତେ ସାଇଙ୍କର ପୁଣ ଯେତେକ ଯୁବତୀ
ଗୋଡ଼ାଇଲେ ବିଧବାଏ ତାଙ୍କ ପଛକତ ।
ଚଳନ୍ତେ ସର୍ବେ ପ୍ରବେଶ ହେଲେ ଗଙ୍ଗାକୂଳେ
ବିଦୁର କହିଲେ ରାଜ୍ୟ ଅଇଲେ ସକଳେ ।
ଧୃତରାଷ୍ଟ୍ର ଭଜିଲେ ସେ ବ୍ୟାସଙ୍କ ସଙ୍ଗତେ
ହେ ବିଦୁର ଆସନ୍ତି କ ନେବାର ନିମନ୍ତେ ।
ଗଙ୍ଗାକୂଳେ ଦେଖିଲେ ସେ ଏକ ଘର୍ଣ୍ଣକୁଣ୍ଠୀ
ରମଣୀଏ ହାହା ନାଥ କହି ମଗ୍ନଲେଟି ।
ଦୁଃଶୀଳା ଯାଇ ଗାନ୍ଧାରୀ ପାଦ ଦୁଇ ଧରି
ଉଚ୍ଚସ୍ୱରେ କାନ୍ଦେ ଜୟଦ୍ରଥକୁ ସୁମରି ।
ଯୁବତୀମାନେ କାନ୍ଦନ୍ତି ଶିରେ କର ଧରି
ପତି ସୁତ ବନ୍ଧୁ ଭ୍ରାତ ସୁଗୁଣ ସୁମରି ।
ଉଚ୍ଚସ୍ୱରେ ନାରୀମାନେ ରୋଦନ କରନ୍ତି
କହୁକ୍ଷଣ ପୂର୍ବେ ସମସ୍ତେ କ ମରିଛନ୍ତି ।
ଅଶ୍ରୁ ଜଳେ ସମସ୍ତଙ୍କ ବକ୍ଷ ହେଲା ଧୋଇ
ସର୍ବେ କାନ୍ଦନ୍ତି କେ ଧୈର୍ଯ୍ୟ ଧରି ନ ପାରଇ ।
କେଉଁ ରମଣୀକି ଅବା ହୋଇନାହିଁ ବ୍ୟଥା
କାହାକୁ ପ୍ରବୋଧ କରି କହିବ କେ କଥା ।
କ୍ରମେ କ୍ରମେ ସେ ଦୁଃଖକୁ ଥିଲେ ସେ ଉପେକ୍ଷି
ଶୋକ ବୃଦ୍ଧିହେଲା ଶାଶୁ ଶ୍ୱଶୁରଙ୍କୁ ଦେଖି ।
ଉଚ୍ଚେ ରଡ଼ିକରି ସର୍ବେ କରନ୍ତି ରୋଦନ
ସେ ଶବଦେ କିବା ଫାଟି-ପଡ଼ଇ ଗଗନ ।
ବ୍ୟାସଙ୍କର ମୁଖ ଚାହିଁ କାନ୍ଦନ୍ତି ସୁନ୍ଦରୀ
ବୋଲନ୍ତି ହେଦେବ ଏଡ଼େ ଦୁଃଖୁ କରି ପାରି ।
ସେ ବୋଇଲେ ଅଇଲେ ଯେ ଦେଖି ଧୃତରାଷ୍ଟ୍ର
ସୁଖ ହେବା ଥାଉ ପୁଣ ବଢ଼ିଲା ଯେ କଷ୍ଟ ।
ବ୍ୟାସଦେବ ତହୁଁ ଧୃତରାଷ୍ଟ୍ରଙ୍କୁ ବୋଇଲେ
ତୋରେ ଦେଖିବାକୁ ଏବେ ଏମାନେ ଅଇଲେ
ତୋତେ ଦେଖି ଶୋକ ବୃଦ୍ଧି ହେଲା ଏହାଙ୍କର
ସମ୍ବୋଧନ କରି ସ୍ୱାଙ୍କୁ ପ୍ରବୋଧ ତୁ କର ।
ଧୃତରାଷ୍ଟ୍ରଙ୍କୁ ପ୍ରବୋଧ ଦେଇ ମହାଋଷି
ବଧୂଜନମାନଙ୍କୁ ସେ ବୋଲନ୍ତି ବିଶ୍ୱାସି ।
ବୋଇଲେ ଗୋ ବଧୂମାନେ ଶୋକତ୍ୟାଗ କର
ପତି ସୁତମାନେ ମରିନାହାନ୍ତି ତୁମ୍ଭର ।
ତୁମ୍ଭେ ଗୋ ପ୍ରଶାନ୍ତ ମନେ ନ କରିବ ନାସି
ଏହିକ୍ଷଣି ଦେଖା ସ୍ୱାମି ହେବା ଆଶିକର ।

ଶୁଣି କେ କରେ କାର୍ପଣ୍ୟ କେହୁ ପାପ୍ରେ ପଡ଼ି
କେଶବାସ ଅସମ୍ଭାଳେ କେ କାନ୍ଦନ୍ତି ଗଡ଼ି ।
କେ ବୋଲଇ ଜନ୍ମେ ଜନ୍ମେ ଦାସୀ ହେବୁ ପତି
ତୁମ୍ଭର ପ୍ରମାଦୁ ଯାଉ ଆମ୍ଭର ଦୁର୍ଗତି ।
ତୁମ୍ଭ ଅନୁଗ୍ରହେ ଯେବେ ସ୍ୱାମିଙ୍କୁ ପାଇବୁ
ଏ ଘୋର ଦୁଃଖକୁ ଆମ୍ଭେମାନେ ପାସୋରିବୁ
ବହୁ ବର୍ଷ ହେଲା ନ ଦେଖିଲୁ ଯେ ନୟନେ
ଏ କଷ୍ଟରୁ ପାର ହେବୁ ତୁମ୍ଭର ପ୍ରସନ୍ନେ ।
ସ୍ୱପନ ପରାୟେ ଲାଗୁଅଛୁ ତୁମ୍ଭ ବାଣୀ
ଆତ୍ମା ବଳକ ହୃଷଇ ତୁମ୍ଭ ବାକ୍ୟ ଶୁଣି ।
ଆଶା ଦେଖାଇ ହେ ମୁନି ନ କର ନିରାଶ
ଆପଣ ଜାଣନ୍ତି ଏଥି ହେବ କେତେ ଦୋଷ ।
ଦେଖି ଆନନ୍ଦେ ରୋମାଞ୍ଚ ହେଉଅଛୁ ଦେହ
ଆଉଥରେ ମହାମୁନି ସେହି କଥା କହ ।
କାକୁସ୍ଥ ବଚନେ ସତ୍ୟବତୀର ନନ୍ଦନ
ଗଙ୍ଗାଜଳେ ପଶି ମୁନି ତହୁଁ କଲେ ସ୍ନାନ ।
ଯୋଗଧ୍ୟାନେ ବସି ତହୁଁ ଚିନ୍ତିଲେ ମହର୍ଷି
ଦିବ୍ୟ ଅବତାର ହୋଇ ବେଗେ ଭୀଷ୍ମ ଆସି ।
ପୁଣି ସେ ଚିନ୍ତିଲେ ଆସି ମିଳିଲେକ ଦ୍ରୋଣ,
ଭୂରିଶ୍ରବା ବାହ୍ଲୀକ ଯେ ସୋମଦତ୍ତ ଗଣ ।
ପୁଣି ଧ୍ୟାନେ ଚିନ୍ତିଲେ ଯେ ଶକତିରନାଥ
କର୍ଣ୍ଣ ମିଳିଲେକ ଆସି ରାଧାର ସନ୍ତତି ।
ଦୁର୍ଯ୍ୟୋଧନ ଅଇଲେ ଶତଭ୍ରାତ ମେଳେ,
ଲକ୍ଷ୍ମଣ କୁମାର ଖଳ ଶକୁନିର ତୁଲେ ।
ଶିଖଣ୍ଡି ଯେ ଧୃଷ୍ଟଦ୍ୟୁମ୍ନ ଦ୍ରୁପଦ ନୃନାଥ ।
ଅଭିମନ୍ୟୁ ତୁଲେ ଶ୍ୱେତ ବିରାଟର ସୁତ
ବିରାଟ ସହିତେ ପୁଣି ପାଞ୍ଚାଳୀ କୁମରେ
ଅଳମ୍ବୁଷ ଘଟୋତ୍କଚ ଆଦି ଯେ ସମରେ ।
ଅଷ୍ଟାଦଶ ଦିନ ମଧ୍ୟେ ପଡ଼ିଲେ ଯେତେକ
ସଂକ୍ଷେପ କରି କହିବି ତାହା ବା କେତେକ ।
ସେକାଳେ ଯେତେକ ଥିଲେ ଜାଣ ଯଥାରୂପେ
ଅଳଙ୍କାର ଆଭରଣ ଯେ ଯେଉଁ ସ୍ୱରୂପେ ।
ବ୍ୟାସ ବୋଇଲେ ଶୁଣ ଗୋ ତୁମ୍ଭେସର୍ବ ବାମା
ଯେ ଯାହାର ପତି ଚିହ୍ନି ବାଛୁଣ ରେନମା ।
ରାତ୍ରକ ତୁମ୍ଭଙ୍କୁ ସିନା କ୍ଷଣକ ଅଟଇ
କର ସମ୍ଭୋଗ ତୁମ୍ଭର ଯାଉ ଏ କଷ୍ଟହିଁ ।

ଉଜାଗରେ ରହି ସୁଖେ ରାତି ପ୍ରହାଇଲ
ପ୍ରଭାତ ହୋଇଲେ ଜାଣ ନ ଥିବ ସେ ଭାବ ।
ଏତେକ ମୁନି କହନ୍ତେ ଧାଇଁଗଲେ ବାଳୀ
ଯେ ଯାହାର ଭର୍ତ୍ତାମାନ ଚହ୍ନି କୋଳକରି ।
ପୁଣି ଯୋଗକୁ ଅଭ୍ୟାସ କଲେ ମହାଋଷି
ସୁବର୍ଣ୍ଣର ପୁର ନଗ୍ର ହୋଇଲାକ ଆସି ।
ଦିବସ ଅନ୍ତରେ ପୁଣି ପ୍ରବେଶନ୍ତେ ନିଶି
ଯେ ଯାହାର ଠାବେ ସର୍ବେ ବିଜେ କଲେ ଆସି
ନବକୋଟି ଯୋଦ୍ଧାଙ୍କର ନବକୋଟି ପୁର
ସୁଖେ ଭଞ୍ଜି ବିଳସନ୍ତି ନାରୀରତ୍ନ ସାର ।
ହଂସତୂଳୀର ତୂଳୀ ତହିଁ ମାଣିକ୍ୟର ଦୀପ
ଲମ୍ବନ୍ତି ଯେ ଚଉସରୀ ଦିବ୍ୟ ଚନ୍ଦ୍ରାତପ ।
ନାନା ହସ କଉତୁକ କରନ୍ତି ବନିତା
ଅଧରମାନ ଚୁମ୍ବନ୍ତି ଉପେକ୍ଷିଣ ଚିନ୍ତା ।
କେବଣ ସ୍ତିରୀ କନ୍ଦନ କରଇ ସ୍ୱାମି ସଙ୍ଗେ
କେତେ ଅବସ୍ଥା ପାଇଲି ମୁଁ ତୁମ୍ଭ ଯୋଗେ
କେହୁ ରୁଷି ସ୍ୱାମିକି ଯେ ହୃଦେ ଦିଏ ପେଲି
ପ୍ରେମ କୁତୂହଳେ ଗୃହୁଁ ପଠେଇ କେ ବୋଲି ।
କେହୁ ନାରୀଏ ରୁଷନ୍ତି ହସନ୍ତି ପୁରୁଷ
ବଚନ ଘୃଷ୍ଟେ କହନ୍ତି ବେଗେ ଆସ ଆସ ।
କେହୁ ପ୍ରେମେ ରୁଷି ପିଠି ଦେଇଣ ବସଇ
କେଉଁ ସ୍ତିରୀ ପୁଣି ଆଡ଼ ବାଙ୍କରେ ସ୍ପର୍ଶଇ ।
କେ ବୋଲେ ତୁମ୍ଭ ଆପଦ ମୋ ମଥାରେ ପଡୁ
ଭର୍ତ୍ତା ପାଇଲୁ ଆମ୍ଭର କଷ୍ଟମାନ ପୋଡୁ ।
କେ ରୁଷଇ କେ ହସଇ କେ ବସଇ ଦୂରେ
କେବଣ ନାରୀ ବିଳାପ କରେ ଉଚ୍ଚସ୍ୱରେ ।
ପ୍ରଭାତେ ଅରୁଣ ଉଦେ ପାହିଗଲା ରାତି
ସ୍ୱପନ ପ୍ରାୟେ ଗଲେ ନାହାନ୍ତି ତ କନ୍ତ ।
ତୃଣ ଘୃତ ପାଇ ଯଥା ବଢ଼ଇ ଅନଳ
ପୁଂସ ବିନା ସ୍ତିରୀ ତଥା ହୋଇଲେ ବିକଳ ।
ମଦନେ ଜର୍ଜ୍ଜର ହେଲା ସମସ୍ତଙ୍କ ଅଙ୍ଗ
ମିଛେ ମଣନ୍ତି ଅବଳା ଛନ୍ତି ପତି ସଙ୍ଗ ।
ଭୁଜ ବଢ଼ାଇ ଆକର୍ଷି ଧରନ୍ତି ଯୁବତୀ
ମିଛେ କୋଳ କରନ୍ତି ଯେ ପୁଂସ ନାହିଁ କନ୍ତ ।
କାମରେ ଅତି ବ୍ୟାକୁଳ ହୋଇ ସର୍ବବାଳୀ
ଆକାଶକୁ ଦୃଷ୍ଟିକରି ରଡ଼ନ୍ତି ବୋବାଳି ।
ଆମ୍ଭଙ୍କୁ ଛାଡ଼ିଣ ନାଥ କେଉଁଆଡ଼େ ଗଲ
ଶରୀର ଅଛି ଜୀବନ କେଣେ କାଢ଼ିନେଲ ।
ଅଧରୁ ଅମୃତ ଆମ୍ଭ ମୁଖେ ପାନ ଦେଇ
ଆମ୍ଭଙ୍କୁ ଛାଡ଼ିଣ କେଣେ ଗଲ ଯେ ପଳାଇ ।
ପୂର୍ବର ଅନୁରାଗ କି ନ ଦେଖି ଆମ୍ଭର
ତେଣୁ ଆମ୍ଭଙ୍କୁ କି ଛାଡ଼ିଗଲ ପ୍ରାଣେଶ୍ୱର ।
ଛାଡ଼ିଯିବା ଥିଲା ଯେବେ କପାଇଁ ଅଇଲ
ଦୁଷ୍ଟପଣ ଦେଖି କିବା ଧଇର୍ଯ୍ୟ ଧ୍ୱଂସିଲ ।
ସ୍ୱାମି ଆଶା ଛାଡ଼ିଥିଲୁ କଲ ଯେ କୃତାର୍ଥ
ଏବେ ତୁମ୍ଭ ଯୋଗୁ ପ୍ରାଣ ତେଜବୁ ଯଥାର୍ଥ ।
ନଖ ଦନ୍ତ ଘାତ ଦେଇ ଆମ୍ଭର ବକ୍ଷରେ
ଏତେବେଳେ ଛାଡ଼ିଗଲ କି ଅପରାଧରେ ।
ଗଲାକଥା ଯାଇଥିଲା ଆସିଲ କି ହେତୁ
ଏଡ଼େ ପ୍ରପଞ୍ଚ କଥାରେ କପାଁ ଆମ୍ଭେ ବର୍ତ୍ତୁ ।
ଏଡ଼େବଡ଼ ବ୍ୟଥା ନାଥ ଦେଲ ଯେ ନ ଜାଣି
ତେବେ ଦେହୁଁ କପାଁ ପ୍ରାଣ ନ ନେଲ ଯେ ପୁଣି
ଆଲିଙ୍ଗନେ ନାନା ସୁଖ ଦେଲ ରାତ୍ରକାଳେ
ବିଶ୍ୱାସଘାତକ ଜାଣ କଲ ଏତେବେଳେ ।
କରନ୍ତେ ବିଳାପ ନାରୀମାନେ ସେହି ବାଣୀ
ପାଣ୍ଡବେ ସର୍ବେ ମଉନ ହେଲେ ତାହା ଶୁଣି ।
ସ୍ୱାମି ସ୍ୱାମି ବୋଲି ସର୍ବେ ରୋଦନ କରନ୍ତି
କୋଳଇଚ୍ଛି ଗଗନକୁ ହସ୍ତ ଯେ ବଢ଼ାନ୍ତି ।
ସଙ୍ଗେ ନିଅ ବୋଲି ଉଚ୍ଚେ ଡାକନ୍ତି ଯେ ନାରୀ
କି ସୁଖ ଅଛଇ ନିଜ ଧରଣୀକୁ ମାରି ।
ଯେଉଁପରି ପଙ୍କଜକୁ ବିନାଶଇ ଅର୍କ
ଅନ୍ତରୀକ୍ଷେ ଥାଇ ତାହା ଦିଅ ପ୍ରତିବାକ୍ୟ ।
ବ୍ୟାସଙ୍କୁ ବୋଲନ୍ତି ପତିଦାନ ଦିଅ ଋଷି
ଶୁଣି ବ୍ୟାସ ବୋଇଲେ ଯେ ଅଳ୍ପ ଅଳ୍ପ ହସି ।
ସ୍ୱାମୀ ସଙ୍ଗେ ଯିବାକୁ କି ଇଚ୍ଛା ଆଗୋ ବାଳୀ
ଦେହୁଦେହୁ ବୋଲି ସର୍ବେ ପାଡ଼ିଲେ ବୋବାଳି
ଏ ବିପଦୁ ତୁମ୍ଭେ ଦାସ୍ୟ କଲେ ହେବୁ ପାର
ବେଗିକୁ ଯେ ମର୍ତ୍ତ୍ୟପୁରୀ ତେଜ ସ୍ୱର୍ଗପୁରୀ ।
ବହୁକାଳ ହେଲା ଦେଖି ନ ଥିଲୁ ନୟନେ
ଦୟାକରି ଦେଖାଇଲ ଦେବ ପରସନ୍ନେ ।
କୃଷ୍ଣର ଦ୍ୱୈପାୟ ଆମ୍ଭ ଋଷିକୁଳେ ଜାତ
ସୁବୁଦ୍ଧି ସୁଜ୍ଞାନୀ ପୂଣ ଅଇଶ୍ୱର୍ଯ୍ୟବନ୍ତ ।

ସର୍ବନାଶି ମାଧବଙ୍କର ତର ଦୋଷ କ୍ଷମା
ସକଳ ବ୍ରହ୍ମାଣ୍ଡ ଖ୍ୟାତ କୃଷ୍ଣର ମହିମା ।
ଏପରି ବହୁ ବିନୟ ଭାଷାଏ କରନ୍ତି
ମୂର୍ଚ୍ଛି ତାଙ୍କ ଶ୍ରୀଚରଣ ତଳେ କରେ ସ୍ତୁତି ।
ନୁହଇ ପଣ୍ଡୁ ତ ଜାତ କ୍ଷେତ୍ରେ ଜାତ ଜ୍ଞାନୀ
ମହା ମନ୍ତ୍ରଭଙ୍ଗର କରୁଅଛ ଶୂନ୍ୟଗାମୀ
ଅଗାଧ ସିନ୍ଧୁ ମଧ୍ୟରେ ମୂର୍ଚ୍ଛି ଅଛୁ ପଶି
କାଅଛ ଅପ୍ରାଧେ ହୋଇଅଛୁ ଏତେ ଦୋଷୀ
ତୁମ୍ଭ ଦୟା କଲେ ନାଥ ଚେତ ମର୍ତ୍ତ୍ୟପ୍ରାପ୍ତି
ସ୍ୱର୍ଗଭୋଗ କରାଇ ଯେ ଦୁଃଖ ଅପହର ।
ଯେବେ ମନୁଷ୍ୟ ମଣ୍ଡଳେ ଜାତ କଲ ମୋତେ
ତେବେ ଠାକୁରଅ ମୋତେ ସଜ୍ଜନ ସଭେତେ ।
ଆପୁଶ୍ୱର୍ଯ୍ୟ ବ୍ରଜିନ ତାତା ମୁନିବର
ହେ ସକ୍ତି କରତା ମୋତେ ଦୁଃଖ ଭବ ପାର
ସତ୍ୟବତୀ ନନ୍ଦନ ଯାର ମହାଶଳ ଚାର
ଷଷ୍ଠି ଲକ୍ଷ ଗ୍ରନ୍ଥ ଅଟେ ଯାହାଙ୍କ ଚରିତ ।
ଶତଦଣ୍ଡ ପ୍ରଣାମ ସେ ବ୍ୟାସଙ୍କର ପାଦେ
ଚାହିଲ ଯେ ଶୂଦ୍ରମୁନି ଶ୍ରୀଶାଙ୍କନା ହୃଦେ ।
ଜନ୍ୟାଙ୍କ ବ୍ୟାକୁଳ ଦେଖି ଚାହିଲେ ମହର୍ଷି
ସେ ସବୁ ପ୍ରକୃତେ ପୁଣ ପ୍ରବେଶିଲେ ଆସି ।
ବ୍ୟାସ ବୋଇଲେ ସେ ଶୁଣ ଯେ ଯାହା ଭଣିଯା
କାମ ଲୋକେ ଉପେକ୍ଷି ଅଛନ୍ତି ସର୍ବେ ଲଜ୍ଜା
ତହୁଁ ପ୍ରତ୍ୟକ୍ଷେ ଜନ୍ୟାଙ୍କ ତନୁପାନ ଧରି
ପିତୃଲୋକେ ବସିଲେ ସେ ଯାଇଁ ସ୍ୱର୍ଗପ୍ରାପ୍ତ ।

---

## ବିଦୁରର ଯୁଧିଷ୍ଠିର ଦେହେ ପ୍ରବେଶ ଓ ଦେହ ସଂସ୍କାର

ବଦନ୍ତି ଅଗସ୍ତି କୁହୋ ଶୁଣ ମନୁରାଜା
ବଇକୁଣ୍ଠେ ବସିଲେ ସେ ଦେଖଣ ଭାରଯା ।
କାଅଁଳ ବିଷ୍ଣୁଙ୍କୁ ଚିନ୍ତା ଘୁଞ୍ଚି ଶୋକ ମୋହ
କୃତାଞ୍ଜଳ ଉଭୟ ତେଜି ଗଲେ ସୁରଜସ୍ତ ।
ଦେଖଣ ଆଶ୍ଚର୍ଯ୍ୟ ଅଛି ବିଦୁର ସଞ୍ଜୟ
ଆଶ୍ଚର୍ଯ୍ୟ ହୋଇଲେ ଦେଖି ପଣ୍ଡୁର ତନୟ ।
ଉଦ୍‌ବେଗ ଚକିତେ କହି ନ ପାରନ୍ତି କଥା
ନଗ୍ରଲୋକେ ଅସମ୍ଭବ ଏସନ ବାରତା ।
ବ୍ୟାସଙ୍କ ପାଦେ ନମିଲେ ସର୍ବେ ଭୂମିମନେ
ମୃତ୍ୟୁ ଜିଣିଲେ ଏ ଦେହ ଛାଡ଼ ପରସନ୍ନେ ।
ଯୁଧିଷ୍ଠି ବୋଇଲେ କର୍ଣ୍ଣେ ଯେ ଶୁଣା ନ ଥିଲା
ତୁମ୍ଭ ମହିମାରେ ତାହା ଏବେ ଦେଖାଗଲା ।
ଏହି ଦୁଃଖ ସାଗରେ ଯେ ପଡ଼ିଅଛୁ ଆମ୍ଭେ
ଜଣାଗଲା ଏଥୁଁ ନଷ୍ଟେ ତାରିବ ଯେ ତୁମ୍ଭେ
ଧୃତରାଷ୍ଟ୍ର ବୋଇଲେ ଯେ ଯୁଧିଷ୍ଠିଙ୍କ ଆଗେ
ରେ ବଳମ୍ବେ ଜନପ୍ରଜା ଥିବେ ଉଦବେଗେ
ରାଜ୍ୟ ଯାଇଁ ପ୍ରଜାଙ୍କୁ ଯେ ସୁଖେ ପାଳ ଏବେ
ଅଛି ପ୍ରାୟେ ଥିବେ ସର୍ବେ ତୁମ୍ଭର ଅଭାବେ ।
ତନୟ ଜତନେ ଧୃତରାଷ୍ଟ୍ର ମନାଇଲେ
ନଇ ଭୁବନକୁ ତହୁଁ ପାଣ୍ଡବେ ଗମିଲେ ।
ପ୍ରବେଶ ହେଲେ ହସ୍ତିନାପୁର ନଗ୍ର ଠାବେ
ନବାସି ଧୃତରାଷ୍ଟ୍ରଙ୍କ ସେହି ବନମାର୍ଗେ ।
ଉଦବନେ ସେ ହସ୍ତିନା ଭବନେ ପ୍ରବେଶ
ଯେ ଯାହା ଭବନେ ରହି କଲେ ଗୃହବାସ ।
ଅଗସ୍ତିଙ୍କି ବୈବସ୍ୱତ ମନୁ ଯେ ବୋଇଲେ
ବନେ ପୁଣି ଧୃତରାଷ୍ଟ୍ର କେଉଁ କୃତ୍ୟ କଲେ ।
ଯୁଧିଷ୍ଠି ଦେବ ପ୍ରଜାଙ୍କୁ ପାଳିଲେ କପରି
ଏସନକ କଥା ଦେବ କହନ୍ତୁ ବିସ୍ତାରି ।
ବୋଇଲେ ମୁନିବେ ଯୁଧିଷ୍ଠିର ସତ୍ୟବାଦୀ
ସତ୍ୟ ସେ କହନ୍ତି ମିଥ୍ୟା ତେଜି ନିରବଧି ।
ଗ୍ରାମ ଦେଶମାନଙ୍କୁ ଯେ ବରଗିଲେ ସ୍ଥିର
କାହାକୁ ଶ୍ରେଷ୍ଠ ମିଥ୍ୟାବାକ୍ୟ ନୋହିଲା ବାହାର
କଷ୍ଟ ନଷ୍ଟ ନୋହିଲା ଯେ ପ୍ରଜାଙ୍କର ମନେ
ହରଷେ ଉପୁଜାଇଲେ କୃଷି ସର୍ବଜନେ ।
ପ୍ରଜାଗଣ ନାନାଅଳଙ୍କାରେ ମଣ୍ଡି ହେଲେ
ସୁବର୍ଣ୍ଣର କଳଶ ଯେ ସମସ୍ତଙ୍କ ଘରେ ।
ପୁତ୍ରମାନେ ପିତାଙ୍କର ହୋଇଥାନ୍ତି ବଶ
ଇନ୍ଦ୍ର ଜାଣି ବୃଷ୍ଟି କରେ ଜନ୍ମେ ବହୁ ଶସ୍ୟ ।
ଅସଂଖ୍ୟ ଧନ ଆହୁତି ଦିଅନ୍ତି ବହ୍ନିରେ
ବେଦଧ୍ୱନି ଶୁଭେ ସର୍ବ ବ୍ରାହ୍ମଣର ପୁରେ ।
ଜଗବସ୍ଥା ନାହିଁ ଜନେ ସାକ୍ଷାତ କନ୍ଦର୍ପ
ବରାଙ୍ଗନା ପ୍ରାୟେ ଜାଣ ସ୍ତ୍ରୀଙ୍କ ସ୍ୱରୂପ ।
ଫଳ ପତ୍ରରେ ଶୋଭିତ ପାଦପର ପନ୍ତି
ଆବର ଫଳ ପୁଷ୍ପରେ ଶୋଭା ପାଉଥାନ୍ତି ।

ଗୀତ ଆଳାପ କରନ୍ତି ସର୍ବେ ହୋଇ ସଙ୍ଗ
ପବନର ଗତି ବାଜି ମଦେ ମତ୍ତ ନାଗ ।
ବହୁଧରୂପେ ରମଣୀ କରନ୍ତି ଯେ କେଳି
ସରୋଜ ଉପରେ ସୁଖେ ଖେଳୁଥାନ୍ତି ଅଳି ।
ପିକ ହଳପାବସନ୍ତ ଶୁକ ଶାରୀ ନାଦେ
ମଦନର ଉଦବେଗେ ସକଳେ ଆନନ୍ଦେ ।
ବ୍ରତ ଆଦି ଉପବାସ କରନ୍ତି ସରବେ
ଅମୃତ ଭରଣ ଖାଇ ପ୍ରସବନ୍ତି ଗାବେ ।
ରୋଗ ଆପଦନ୍ତି କାହ୍ନୁ ନ ଘଟଇ ପୁରେ
ପୁରାଣ ପଢ଼ା ହୁଅଇ ଜାଣ ଘରେ ଘରେ ।
କାମ ଅର୍ଥବାଦେ କେହ୍ନ ନ ପଡ଼ନ୍ତି ମୋହେ
ଭଲ ନୋହିଲା ବୋଲଣ କେହ୍ନ ତ ନ କହେ
ଯେ ଯାହାର ଅଧିକାରେ ଥାଆନ୍ତି ପୁରୁଷେ
ଧନ ବସ୍ତ୍ର ନ ହରନ୍ତି କେହ୍ନ ଲୋଭ ବଶେ ।
ପୁରଜନଙ୍କର ନାହିଁ ତହିଁ ପରଦାର
ଦୁଃଖୀ ତସ୍କର ନାହିଁ ପରଧନ ହରା ।
ସ୍ୱସ୍ଥାନେ ବସନ୍ତି ପୂଜନ୍ତି ସ୍ନାନେ ଯଜ୍ଞେ ସର୍ବେ
କୃଷି ଉପୁଜାଇ ବିପ୍ର ତୋଷି ଦାନଦ୍ରବ୍ୟେ ।
ମେଘ ଯଥାକାଳେ ବାରି ବର୍ଷନ୍ତି ସତତ
ଶୁଣୁଥାନ୍ତି ରାଜା ପରରାଷ୍ଟ୍ର ବାର୍ତ୍ତା ନିତ୍ୟ ।
ପାପକର୍ମ କଥାକୁ ସେ ନ କରନ୍ତି ଲକ୍ଷ୍ୟେ
ସମସ୍ତେ ଦଶନ୍ତି ରାଜାପୁରର ପରାସ୍ତେ ।
ଯମରାଜା ଅମାତ୍ୟ ନ ଶୁଣନ୍ତି ଶ୍ରବଣେ
ମଙ୍ଗଳେ ଥାଆନ୍ତି ସର୍ବ ନରନାରୀଗଣେ ।
ଏ ବିଧିରେ ଯୁଧିଷ୍ଠିର ପ୍ରଜାଙ୍କୁ ପାଳନ୍ତି
ଧୃତରାଷ୍ଟ୍ରଙ୍କ ଦର୍ଶନେ ବଳିଲା ଯେ ମତି ।
ଭାଇମାନଙ୍କୁ ସଙ୍ଗତେ ଅଛନ୍ତି ସେ ଘେନି
ଧୃତରାଷ୍ଟ୍ର ସନ୍ନିଧିରେ ବିଜେ ନୃପମଣି ।
କୁନ୍ତୀ ଗାନ୍ଧାରୀ ଆଦର ଧୃତରାଷ୍ଟ୍ର ରାଜା
ସମସ୍ତଙ୍କର ଯୁଧିଷ୍ଠି କଲେ ପାଦପୂଜା ।
ଯୁଧିଷ୍ଠି ପୁଚ୍ଛିଲେ ତାତ ବିଦୁର ତ ନାହିଁ
ଧୃତରାଷ୍ଟ୍ର ବୋଲେ ଉତ୍ତରକୁ ଅଛି ଯାଇ ।
ପ୍ରାଣେ ଥିଲା ପ୍ରାୟ ମୋତେ ପ୍ରତେ ହେଉନାହିଁ
ଏତେ ମାସେ ହେଲା ବାରୁ ତାକୁ ନ ଦେଖଇ
ସବୁଦିନେ ବିଦୁରକୁ ଦେଖିବାକୁ ଇଚ୍ଛା
ମରଣ କାଳ ଜାଣିକ ନ କଲା ସେ ପୁଚ୍ଛା ।
ଅବୟବମାନ ବାରୁ ନ ଚଳଇ ମୋର
ଭଜନ କରୁଥାଇ ଯେ ଜନନୀ ତୋହର ।
ମୋହର ସଙ୍ଗେ ଯଦ୍ୟପି ନ ଥାନ୍ତେ ତୋମାଏ
ଅଳପ ଦିନେ ଲୋଟନ୍ତା ଏ ମୋହର କାୟେ
ନଥାନ୍ତେ ମୋ ସଙ୍ଗେ ଯେବେ ତୋହରଜନନୀ
ଆହାରବିନା ମୋ ପ୍ରାଣ ଯାଇ ସାରନ୍ତାଣି ।
ଏତେକ ବୋଲନ୍ତେ ଆସି ବିଦୁର ମିଳିଲେ
କେହ୍ନ ନ ଦେଖିଲେ ଏକ ଯୁଧିଷ୍ଠି ଦେଖିଲେ
ନିକଟେ ଆସି ଯୁଧିଷ୍ଠି ଦେବ ମୁଖ ଚାହିଁ
ପୁଣି ବାହୁଡ଼ିଲେ ସେହି ଆଖିଠାରି ଦେଇ
ଡାକିଲା ପ୍ରାୟେ ଯୁଧିଷ୍ଠି ରାଜା ତାହା ବୁଝି
ପଛେ ପଛେ ଗୋଡ଼ାଇଣ ଗଲେ ବନ ମଝି ।
ଅନ୍ତର ହୋଇ ବିଦୁର ଯାଇ ଖଣ୍ଡେ ଦୂରେ
ବିଶ୍ରାମ କରି ରହିଲା ଯୁଧିଷ୍ଠି ଆଶାରେ ।
ଜମ୍ବୁବୃକ୍ଷ ମୂଳେ ବସିଅଛି ଶୂଦ୍ରଯୋନି
ନିରେଖଇ ଯୁଧିଷ୍ଠିର ମୁଖ ନେତ୍ର ଘେନି ।
ବସିଲେ ଜମ୍ବୁ ବୃକ୍ଷର ମୂଳେ ଶୂଦ୍ର ସୁତ
ନିଯୋଜିଲେ ଯୁଧିଷ୍ଠିଙ୍କ ପରେ ବେନି ନେତ୍ର
କୃଷ୍ଣ ବୋଲଇ ସେ ମୁଖେ ହୃଦେ କୃଷ୍ଣ ପଢ଼ି
ଊର୍ଦ୍ଧ୍ୱଗତ ତାର ପ୍ରାଣଲିଙ୍ଗ ଗଲା ଛାଡ଼ି ।
ଯୁଧିଷ୍ଠି ଦେବ ଶରୀରେ ପଶିଲା ଯେ ପ୍ରାଣ
ବିଚାରିଲେ ଯୁଧିଷ୍ଠି ଏ କେଉଁଣ କାରଣ ।
ଜାଣିଲି ବିଦୁର ଆତ୍ମା ମୋ ଦେହେ ପଶିଲା
କିଂଭୂତ କାରଣ ଏହା ଜାଣି ନ ଗଲା ।
ଏତେ ବିଚାରି ସନ୍ନିଧେ ମ ପାଳ ଯାଇଁ
ବିଦୁର ଶରୀର ଭୁଜେ ଧରିଣ ତୋଳଇ ।
ବୋଲନ୍ତି ଆତ୍ମା ଏହାର ଶରୀରେ ତ ନାହିଁ
ମୋହିତ ସେ ଧର୍ମରାଜ ବୋଲେ ଆଉଜାଇ ।
ଅଶ୍ରୁଜଳେ ବିଦୁରକୁ କରାଇଲେ ସ୍ନାନ
ଆଜ ପ୍ରାଣତ୍ୟାଗୀ ହେଲେ ପଣ୍ଡୁ ଯେ ରାଜନ
ହିତ କଥାମାନ କିଏ ବୋଲିବ ବା ଆଉ
ଆଜହୁଁ ଭୁଟିଲା ମୋର ଡାହାଣ ଯେ ବାହୁ ।
ସଙ୍କଟକାଳେ ସନ୍ନିଧେ ସଦା ମୋର ଥିଲେ
ଏତେଦିନେ ପୁତ୍ର ବନ୍ଧୁ ସମସ୍ତେ ପଡ଼ିଲେ ।
ବିଦୁରର ବେନିଭୁଜ ଧରି ମହାରାଜା
ଆଲିଙ୍ଗନ କରନ୍ତେ ସେ କଲା ଭୂମିଶଯ୍ୟା ।

ବନେ ଅଇଲ ଦେଖିବା ପାଇଁ ତାତ ତୋତେ
କେଉଁ ଆଡ଼େ ଗଲୁ ଏବେ ନ ଦେଖିଲୁ ନେତ୍ରେ
କଉରବ ମଧ୍ୟେ ତୋର ଏକା ଥାଏ ଦୟା
କେତେ ପ୍ରମାଦୁ ଉଦ୍ଧାରି ଗୁଡ଼ିଲୁ ତ ମାୟା ।
ଧୃତରାଷ୍ଟ୍ର ଶୁଣି ହୃଦେ ପ୍ରାଣ କେହ୍ନେ ଧରି
କୁନ୍ତୀ କେମନ୍ତେ ଧରିବ ଆବର ଗାନ୍ଧାରୀ ।
ଏତେ ବୋଲି ଯୁଧିଷ୍ଠି ସେ ପିଣ୍ଡକୁ ଗୁଡିଲେ
ସଂସ୍କାର କରିବା ପାଇଁ ଅଗ୍ନି ଆରୋପିଲେ ।
ଆକାଶ ବାଣୀ ଶୁଭିଲା ହୋଇ ଊର୍ଦ୍ଧ୍ୱଗତ
ବିଦୁରକୁ ଦହନ ତୁ ନ କର ଭୂପତି ।
ବ୍ରହ୍ମଜ୍ଞାନ ଉପଦେଶ ଅଛଇ ସେ ପାଇ
ଜ୍ଞାନାମୃତକୁ ଦହନ ରାଜା ନ ଯୋଗାଇ ।
ବ୍ରହ୍ମଜ୍ଞାନୀଙ୍କର ପିଣ୍ଡ ଅଟେ ଜ୍ଞାନମୟ
ବିଳମ୍ବ ନ କର ପୋଡପକା ତାର କାୟ ।
ଆକାଶ ବାଣୀ ଶୁଭିଲା ଯହୁଁ ଆସି ମଧ୍ୟେ
ଖାତେକ ଖୋଳିଲା ରାଜା ଯେନ କାଠ ଖୁନ୍ତେ
ଗର୍ତ୍ତରେ ବିଦୁର ଶବ ପୋତି ମାଟିଦେଇ
ତହୁଁ ଅଇଲେକ ରାଜା ବଇକୁଣ୍ଠ ପାଇ ।
ଧୃତରାଷ୍ଟ୍ର ଅଗ୍ରତରେ କହିଲେକ ନୃପ
ବ୍ୟାସ କହିଲେ ସେଠାରେ ବିଦୁର ସ୍ୱରୂପ ।
ପୁଣି ଧୃତରାଷ୍ଟ୍ର ଯୁଧିଷ୍ଠିଙ୍କି ଦେଲେ ଶିକ୍ଷା
ତୁ ଯା ବାବୁ ଯୁଧିଷ୍ଠିର ଦେଶ କର ରକ୍ଷା ।
ଆରେ ବାବୁ ଆମ୍ଭଠାରେ ପ୍ରୟୋଜନ ନସ
ଆଉ ମହାତ୍ମା ଆମ୍ଭଙ୍କୁ ନ କର ତୁ ଆଶ ।
ମୁଁ ଜୀବନେ ଥାଉଁ ଯେବେ ଚଳିଲା ବିଦୁର
କାଳପର ଜାଣ ମୁହିଁ ଚେତନ ଶରୀର ।
ଯହୁଁ ଧୃତରାଷ୍ଟ୍ର ମହାତ୍ମା ଚେତଣ କହିଲେ
କଷ୍ଟେ ଯୁଧିଷ୍ଠିର ତହୁଁ ରାଜ୍ୟେ ବାହୁଡ଼ିଲେ ।
ହସ୍ତିନା ନଗରେ ଆସି ହୋଇଲେ ପ୍ରବେଶ
ବିଦୁର କଥା କହିଲେ ଭାଇଙ୍କର ପାଶ ।
ଅତ୍ୟନ୍ତ ବ୍ୟାକୁଳ ହେଲେ ଭାଇମାନେ ଶୁଣି
ବହୁ ଶୋକ କଲେ ତାଙ୍କ ଗୁଣମାନ ଗୁଣି ।
ତଦନ୍ତେ ସତ୍ୟେ ପାଳିଲେ ଯୁଧିଷ୍ଠିର ମହୀ
କାହାର ମନରେ ଦୁଃଖ ହେଉ ସୁଖ ନାହିଁ ।
ଜୟ ଜୟ ଜଗନ୍ନାଥ ଜଗତ କାରଣ
ଚତୁର୍ଭୁଜେ ଶଙ୍ଖ ଚକ୍ର ଆଦି ଶୋଭନ ।
ତାହାଙ୍କ ଚରଣ ତଳେ ନିରନ୍ତର ସେବି
ନମଇଁ ଶାରଳା ଦାସ ଶୂଦ୍ରମୁନି କବି ।

---

## ସଞ୍ଜୟର ପଳାୟନ, ଧୃତରାଷ୍ଟ୍ର ଗାନ୍ଧାରୀ ଓ କୁନ୍ତୀଙ୍କ ବନ ଦାହେ ଦଗ୍ଧ ଏବଂ ଅନ୍ତ୍ୟେଷ୍ଟି କ୍ରିୟା

କହନ୍ତି ଅଗସ୍ତି ବୈବସ୍ୱତର ଅଗ୍ରତେ
ବିଦୁର ମରିବା ପରେ ବରଷକ ଅନ୍ତେ ।
ଜ୍ୟେଷ୍ଠ କୃଷ୍ଣପକ୍ଷ ଅମାବାସ୍ୟା ରବିବାର
କୃତ୍ତିକା ନକ୍ଷତ୍ର ଯୋଗ ଅଟେ ସେ ଦିନର ।
ବିଷ୍ଟି କରଣ ଯେ ବଇଧୃତ ନାମେ ଯୋଗ
ଗଙ୍ଗାକୂଳେ ପର୍ବତ ଯା ନାମ ମଧ୍ୟସ୍ୱର୍ଗ ।
ତହିଁ ବୃକ୍ଷଦେହେ ବୃକ୍ଷମାନେ ହୋଇ ଘଷି
ଅଗ୍ନି ଜାତ ହୋଇ ମହାତେଜ ଯେ ପ୍ରକାଶି
ଆକାଶରେ ବ୍ୟାପିଲା ସେ ଅଗ୍ନିର ତେଜ
ଆବର ସେ ଉଠି ଗିରି କନ୍ଦର ବହ୍ନିଯ୍ୟ ।
ଦେଖିଣ ସଞ୍ଜୟ ତାହା ଅତି ଉଦବେଗେ
ଯାଇଣ କହିଲା ଧୃତରାଷ୍ଟ୍ରଙ୍କର ଆଗେ ।
ହେ ସ୍ୱାମୀ ଅନଳେ ଦଗ୍ଧ ହେଉଛି ଏ ବନ
ମୋ ପିଠିରେ ବସ ପଳାଇବା ଯେ ବହନ ।
ଥୋଇବି ତୁମ୍ଭଙ୍କୁ ଏକେ ଏକେ ଯୋଜନେ
ନ କର ବିଳମ୍ବ ଚାଲ ଯିବା ହେ ବହନେ ।
ଧୃତରାଷ୍ଟ୍ର ବୋଇଲେ ମୋ ଦେହେ ବଳ ନାହିଁ
ପାରିବ ମୁଁ କାହିଁ ଶୀଘ୍ର ହୋଇ ଏଥିପାଇଁ
ଅସ୍ଥି ଚର୍ମ ଅଛି ମାତ୍ର ପାଏ ବଡ ଦୁଃଖ
ଅନଳ ଦହିଲେ ଦେହ ଲଭିବ ଯେ ସୁଖ ।
ଅନିତ୍ୟ ଶରୀର କାହିଁ ପାଇଁ ବହିଥିବ
ଅବଶ୍ୟ ଏମୃତ୍ୟୁମଣ୍ଡଳରୁ କାଳେ ଯିବ ।
ତପତତ ଆସ୍ତ ବେଢେ ଆସି ଲାଗିଲାଣି
ତହୁ ଉପର ଆମ୍ଭଙ୍କୁ ଏଥୁ ଛିବୁ ଯେନ ।
ଅଶକତ ଶରୀର ଯେ ଚାଲି ନ ପାରଇ
ପଳା ଯା ସଞ୍ଜୟ ଏଠାବରୁ ବେଗେ ତୁହି ।
ଦେଖ ଏହି ବହ୍ନି ପୁଣ ଆସୁଅଛି ଧାଇଁ
ଭୟରେ ସଞ୍ଜୟ ତହୁଁ ଗଲାକ ପଳାଇ ।
ପଞ୍ଚଦାଗ ଶୀଘ୍ର ମାତ୍ର ଆସିଲା ଅନଳ
ଧୃତରାଷ୍ଟ୍ର ଗାନ୍ଧାରୀ ଯେ ହୁଅନ୍ତି ଚଞ୍ଚଳ ।

ଇତ୍ୟେ କୁନ୍ତୀଦେବୀ ଦେବ ଦୈବ ସୁମରନ୍ତି
ସବୁରି ଉପରେ ଅଗ୍ନି ପଡ଼ିଲା ଚଉଡ଼ତ ।
ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଅମାବାସ୍ୟା ଦିନ
ତିନିଜଣ ଯାକ ତହିଁ ହୋଇଲେ ଦହନ ।
ତଦନ୍ତେ ନାରଦ ହସ୍ତିନାରେ ପ୍ରବେଶିଲେ
ଦେଖି ତାଙ୍କୁ ଯୁଧିଷ୍ଠିର ପୂଜିବା ଇଚ୍ଛିଲେ ।
ନାରଦ ବୋଇଲେ କାହିଁକି ତୁ କରୁ ପୂଜା
ମୃତାଶୌଚ ହୋଇଅଛୁ ତୋର ମହାରାଜା ।
ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଅମାବାସ୍ୟା ଦିନ
କୁନ୍ତୀ ଧୃତରାଷ୍ଟ୍ର ଦାରା ସହିତ ଦହନ ।
ବନପୋଡ଼ିରେ ସେମାନେ ହୋଇଲେ ଦହ୍ୟ
ଏହା ଶୁଣି ମୂର୍ଚ୍ଛାଗତ ହେଲେ ଧର୍ମରାଜ ।
ଅତି ଶୋକ ବିକଳ ଯେ ହେଲେ ପଞ୍ଚଭ୍ରାତ
ଅଗ୍ନି ପ୍ରତି ଯୁଧିଷ୍ଠିର ହୋଇଲେ କୁପିତ ।
ମହାବ୍ରହ୍ମ ବୋଲି ଆଖ୍ୟା ଅଟଇ ସେ ବହ୍ନି
ତ୍ରିଶୀଳଙ୍କ ଦହିଲା ସେ ମୋହର ଜନନୀ ।
ନାରଦ ବୋଇଲେ ତୁହେ ଶୁଣ ନୃପବର
କିଛିହିଁ ଦୋଷ ନାହିଁ ସେ ଅଗ୍ନି ଦେବତାର
ଧୃତରାଷ୍ଟ୍ର ଗାନ୍ଧାରୀ ଯେ ଶରୀର ଦହିଲେ
ତୋ ଜନନୀ ସେ ଠାବରୁ କିଛି ଦୂରେ ଥିଲେ
ପବନ ଯେ ତୃଣ ଆଣି ତହିଁ ପକାଇଲା
ତେଣୁ ସେଠାରେ ଦୋହରି ଅଗ୍ନି ଜାତ ହେଲା
ବେନି ଅଗ୍ନି ଯୋଗ ହେଉଁ ମଲା ପଣ୍ଡୁରାଣୀ
ତୁ କପାଁ ବହ୍ନିରୁ ଶାପ ଦେବୁ ନୃପମଣି ।
ପୂର୍ବେ ଭୃଗୁ ଅଗ୍ନିଙ୍କି ଯେ ଦେଇଛନ୍ତି ଶାପ
ସମସ୍ତ ଭକ୍ଷିବେ ତାକୁ ନ ଲାଗିବ ପାପ ।
ଏ ମୃତ୍ୟୁପୁରେ ଅମର ଦେଖିଛୁ କାହାକୁ
ମୋ ଜନନୀ ବୋଲି କପାଁ ଭଜୁନ୍ତୁ ମୋହକୁ ।

ଏତେ ବୋଲି ବ୍ରହ୍ମାପୁତ୍ର ଗଲେ ତହୁଁ ଶୂନ୍ୟେ
ପଠାଇଲେ ପୁରୋହିତ ଧୌମ୍ୟଙ୍କୁ ସେ ଦିନେ
ପ୍ରେତକ୍ରିୟା କାର୍ଯ୍ୟକର ଶାସ୍ତ୍ରେ ଅଛି ଯଥା
ଯେମନ୍ତେ ପ୍ରେତଙ୍କୁ ମୋକ୍ଷ ପାନ୍ତି ପିତା ଧାତା
ପୁରୋଧାଙ୍କୁ ସଙ୍ଗେ ଘେନିଗଲେ ପାଞ୍ଚଜଣେ
ଦଶଦିନେ ପ୍ରବେଶିଲେ ମୃତ୍ୟୁ ହେବାସ୍ଥାନେ ।
ଦେଖନ୍ତି ଦହନ ସ୍ଥାନେ ନାହିଁ ଚର୍ମ ଅସ୍ଥି
ଗଙ୍ଗାକୂଳେ ରହି ପ୍ରେତକାର୍ଯ୍ୟ ସେ କରନ୍ତି ।
ଗଜ ତୁରଗ ଯେ ଧନ ଧାନ୍ୟ ପୃଥ୍ୱୀଦାନେ
ବିପ୍ରଙ୍କୁ ତୋଷି ବସନ ପ୍ରଚୁର ଭୋଜନେ ।
ଗଙ୍ଗାକୂଳରେ ପାଣ୍ଡବ କ୍ରିୟା ଶେଷ କରି
ବିଜେ ଧର୍ମନନ୍ଦନ ଯେ ଦଇବ ସୁମତି ।
ହସ୍ତିନାପୁରେ ହୋଇଲେ ଆସି ସେ ପ୍ରବେଶ
ରାଜସିଂହାସନେ ପୁଣି ବସିଲେ ନରେଶ ।
ଆଶ୍ଚର୍ଯ୍ୟ ହୋଇଲେ ଏହା ଦେଖି ସ୍ୱର୍ଗଲୋକ
ଏହାଦେଖି ଉପେକ୍ଷନ୍ତି ସର୍ବେ ସର୍ବ ଦୁଃଖ ।
ବିଷମ ସନ୍ଦେହ ତୁଟେ ଶୁଣିବା ମାତ୍ରକେ
ଏହା ଶୁଣି ନ ପଡ଼ନ୍ତି ରୋଗଭୟଶୋକେ ।
କୃଷ୍ଣର ମହିମା ଯେହୁ ଶ୍ରବଣେ ଶୁଣନ୍ତି
ସଂସାର ସାଗରୁ ସେହି ସୁଖେ ତରିଯାନ୍ତି ।
ପଞ୍ଚପାଣ୍ଡବ କୃଷ୍ଣର ଜାଣ ପଞ୍ଚପ୍ରାଣ
ଯେ କୃଷ୍ଣ ସେହି ପାଣ୍ଡବ ଏ କଥା ପ୍ରମାଣ ।
କୃଷ୍ଣ ଅନୁରାଗ ବିନା ବାକ୍ୟ ନାହିଁ ମୋର
ବାସୁଦେବ ଶ୍ରୀଚରଣେ ଲୁଚୁ ମୋର ଶିର ।
ବଦନ୍ତି ଶାରଳାଦାସ ଏ ମହାଭାରତେ
ଖଣ୍ଡଇ ମହାପାତକ ଏହାକୁ ଶୁଣନ୍ତେ ।
ଇତି ଶ୍ରୀ ମହାଭାରତ ଆଶ୍ରମିକ ବାଣୀ
ସଂସାରରୁ ତର ନରେ ଏହା ପଢ଼ ଶୁଣି ।

ମହାଭାରତ ଆଶ୍ରମିକ ପର୍ବ ସମାପ୍ତ



ମୁଦ୍ରାକର—ଶ୍ରୀ କମଳ ଲୋଚନ ଗଗବଡ଼୍, ଶ୍ରୀ ରାଧାରମଣ ପ୍ରେସ, କଟକ—୧୯୮୦